ବିଶ୍ୱସାହିତ୍ୟ ଗ୍ରନ୍ଥମାଳା : ସଂଖ୍ୟା-୨୫

# ଟଲଷ୍ଟୟଙ୍କ କାହାଣୀ

[ ପ୍ରଥମ ଖଣ୍ଡ ]

ଅନୁବାଦ :

ଅଧ୍ୟାପକ ଶ୍ରୀଧର ଦାସ



ପ୍ରକାଶକ :

ଅଭିରାମ ମହାପାତ୍ର

**ଗ୍ରନ୍ଥମନ୍ଦିର**

କଟକ-୨ : ବ୍ରହ୍ମପୁର

ମୁଦ୍ରକ—

ଶ୍ରୀ ଅଜୟକୁମାର ଘୋଷ

**ଶ୍ରୀହରନାଥ ପ୍ରେସ,**

କଟକ-୨

ପ୍ରଥମ ସଂସ୍କରଣ

ଫେବୃଅରି, ୧୯୭୧

ମୂଲ୍ୟ

ଟ ୨.୦୦

# ସୂଚୀ

# ମନୁଷ୍ୟ କାହିଁରେ ବଞ୍ଚେ

## ( ଏକ )

ସାଇମନ ନାମରେ ଜଣେ ମୋଚି ଥିଲା । ସେ ଅତି ଗରିବ । ତାର ନିଜର ଘର କି ଜମିବାଡ଼ି ନ ଥାଏ । ତେଣୁ ସେ ଜଣେ ଗୃହସ୍ଥର ଘରେ ନିଜର ସ୍ତ୍ରୀ ଓ ପିଲାମାନଙ୍କ ସଙ୍ଗେ ରହୁଥାଏ । ଜୋତା ତିଆରି କରି ବା ପୁରୁଣା ଜୋତା ମରାମତି କରି ସେ ଯାହା ଅର୍ଜୁଥିଲା ସେଥିରେ କଷ୍ଟରେ କୁଟୁମ୍ବ ପୋଷୁଥିଲା । ମଜୁରି ଅଳ୍ପ ମିଳେ; ଅଥଚ ଖାଇବା ଜିନିଷ ମହଙ୍ଗା । ତେଣୁ ପ୍ରାୟ ସବୁ ଅର୍ଥ କେବଳ ଖାଇବାରେ ଖର୍ଚ୍ଚ ହୋଇଯାଏ । ତାର ଘରେ ଗୋଟିଏ ମାତ୍ର ମେଣ୍ଢାଚମଡ଼ାର କୋଟ୍ ଥାଏ । ସେହି ଗୋଟିକରେ ସ୍ୱାମୀ ସ୍ତ୍ରୀ ଦୁଇଜଣଯାକ ଚଳନ୍ତି । ଯିଏ ଯେତେବେଳେ ବାହାରକୁ ଯାଏ, ସେ ସେତେବେଳେ ତାହା ବ୍ୟବହାର କରେ । ପୁଣି ସେଇଟି ପୁରୁଣା, କେତେ ଜାଗାରେ କଣା ହୋଇଯାଇଥାଏ । ଦୁଇ ବର୍ଷ ହେଲା ସାଇମନ କୋଟ ପାଇଁ ଗୋଟିଏ ମେଣ୍ଢାଚମ କିଣିବା ପାଇଁ ଚେଷ୍ଟା କଲାଣି । କିନ୍ତୁ କିଣି ପାରି ନାହିଁ । ସେ ବର୍ଷ ଶୀତ ଦିନ ଆସିବା ଆଗରୁ ସାଇମନ କିଛି ଟଙ୍କା ସଂଗ୍ରହ କଲା । ମୋଟରେ ତିନି ରୁବେଲ୍ ହେଲା । ସେ ତାହା ନିଜ ସ୍ତ୍ରୀର ବାକ୍ସରେ ରଖିଥାଏ । କେତେକ ଲୋକଙ୍କଠାରୁ ଜୋତା ତିଆରି ଓ ମରାମତି ବାବଦରେ ତାର ସାଢ଼େ ପାଞ୍ଚ ରୁବେଲ୍ ପାଉଣା ଥାଏ । ତାର ଆଶା, ଏଥିରେ ଗୋଟିଏ ମେଣ୍ଢାଚମଡ଼ାର କୋଟ ହୋଇପାରିବ ।

ଦିନେ ସେ ସେହି ମେଣ୍ଢାଚମ କିଣିବା ପାଇଁ ଘରୁ ବାହାରିଲା । ଭାରି ଶୀତ ହେଉଥାଏ । ସେ ଗେଞ୍ଜି ଉପରେ ସ୍ତ୍ରୀର ଗରମକୋଟ୍‌ଟି ପିନ୍ଧି ତା ଉପରେ ନିଜର ସୂତାକପଡ଼ାର କୋଟ୍‌ଟି ପିନ୍ଧିଲା ଓ ତିନି ରୁବେଲ୍‌ର ନୋଟ ପକେଟରେ ପୂରାଇ ହାତରେ ଠେଙ୍ଗାଟି ଧରି ଘରୁ ବାହାରିପଡ଼ିଲା । ଏତେ ବାଟ ଯିବାକୁ ହେବ; ଠେଙ୍ଗାଟା ଧରିଥିଲେ ଦେହରେ ବଳ ଆସିବ ବୋଲି ତାର ଆଶା । ସେ ଭାବିଲା—ତିନୋଟି ରୁବେଲ୍‌ର ନୋଟ ପକେଟରେ ଅଛି । ବାଟରେ ଗ୍ରାହକମାନଙ୍କଠାରୁ ବକେୟା ଟଙ୍କା ଅସୁଲ୍ କରିବ । ଆଠ ରୁବେଲ୍‌ରେ ଗୋଟାଏ ଭଲ ମେଣ୍ଢାଚମଡ଼ା କିଣି ସନ୍ଧ୍ୟାବେଳକୁ ଘରକୁ ଫେରି ଆସିବ ।

ସେ ପ୍ରଥମେ ଗାଁର ଜଣେ ଚାଷୀ ଘରକୁ ଗଲା । ତାଠାରୁ କିଛି ପ୍ରାପ୍ୟ ଥାଏ । ସେତେବେଳକୁ ଚାଷୀ ଘରେ ନ ଥିଲା । ତାର ସ୍ତ୍ରୀ କହିଲା, "ମୋ ପାଖରେ କିଛି ନାହିଁ । ମୋର ସ୍ୱାମୀ କାମକୁ ଯାଇଛନ୍ତି । ଆମେ ବର୍ତ୍ତମାନ ବଡ଼ ଅଭାବରେ ଅଛୁ । ଯେପରି ହେଉ, ତୁମ ପାଉଣାଟଙ୍କ ଆର ସପ୍ତାହରେ ଦେଇଦେବୁ ।" ଏହା ପରେ ସାଇମନ ଅନ୍ୟ ଜଣେ ଚାଷୀର ଘରେ ପହଞ୍ଚି ତାର ବାକି ପଇସା ମାଗିଲା । ଚାଷୀ କହିଲା, "ଭାଇ, ଜୋତା ମରାମତିର ପାଉଣା ମୋ ଉପରେ ରହିଯାଇଛି । ଆଜି ସବୁ ଦେଇ ପାରିବି ନାହିଁ । ମୋଠାରେ ମୋଟେ ଅଧରୁବେଲ ଅଛି । ଆଜି ସେତିକି ନେଇଯାଅ । ଅବଶିଷ୍ଟ ଦେଣା ମୁଁ ନିଜେ ଯାଇ ତୁମ ଘରେ ଦେଇ ଆସିବି ।"

ସାଇମନ ଟଙ୍କା ସଂଗ୍ରହ କରି ନ ପାରି ଧାରରେ ଖଣ୍ଡିଏ ଚମଡ଼ା କିଣିବା ଆଶାରେ ଦୋକାନକୁ ଗଲା । ମାତ୍ର ଦୋକାନୀ କହିଲା, "ଟଙ୍କା ନଗଦ ଦିଅ ଓ ଯେମିତି ଇଚ୍ଛା ଚମଡ଼ା ବାଛି ନିଅ । ମୁଁ ଧାରରେ ବିକ୍ରି କରେ ନାହିଁ । ସେଥିରେ ଭାରି ଅସୁବିଧା । ବାକି

ଅସୁଲ୍ କରିବାକୁ ଦଶଥର କାଏ ଦଉଡ଼ୁବ । ଟଙ୍କା ନାହିଁ ତ ଚାଲ୍‌ଯାଅ ।”

ଏତେ ବାଟ ଆସି ସାଇମନ ଚମଡ଼ା କିଣି ପାରିଲା ନାହିଁ । ଲଭ୍ ଭିତରେ ଅଧରୁବେଲ୍ ମାତ୍ର ଆଦାୟ ହେଲା । ଅନ୍ୟ ଗୋଟିଏ ଲଭ ମଧ୍ୟ ହେଲା । ଜଣେ ଚାଷୀ ହଳେ ଜୋତା ମରାମତି କରିବାକୁ ସାଇମନକୁ ଦେଲା । ସେ ଜୋତା ଯୋଡ଼ିକ ଧରି ଘରକୁ ଫେରିବାକୁ ବସିଲା ।

ସାଇମନର ମନ ଭଲ ନ ଥାଏ । ଶୀତ ହେଉଥାଏ । ବାଟରେ ଗୋଟାଏ ମଦଦୋକାନ ଦେଖି ସେ ଅଧରୁବେଲାର ମଦ କିଣି ପିଇଲା । ମଦ ପିଇବା ପରେ ଦେହ ଗରମ ଲାଗିଲା ଓ ମନରେ ଟିକିଏ ଫୁର୍ତ୍ତି ଆସିଲା । ଗୋଟାଏ ହାତରେ ଠେଙ୍ଗାଟି ଓ ଆର ହାତରେ ପୁରୁଣା ଜୋତା ହଳକ ଧରି ସେ ଚାଲିବାକୁ ଲାଗିଲା । ସେ ମନକୁ ମନ କହିଲା—“ମେଣ୍ଢାଚମଡ଼ାର କୋଟ ପିନ୍ଧି ନ ଥିଲେହେଁ ମୋତେ ବେଶ୍ ଉଷୁମ ଲାଗୁଛି । ମଦଟୋପାକ ଯୋଗେ ଦେହଟାଯାକ ଉଷୁମ ହୋଇଗଲା । ମେଣ୍ଢାଚମଡ଼ାରେ ମୋର କି ଦରକାର ? ମୁଁ ବେଶ୍ ଚଳିଯାଉଛି; କିଛି ଚିନ୍ତା ନାହିଁ । ଅବଶ୍ୟ ମୋ ସ୍ତ୍ରୀ ବିରକ୍ତ ହେବ । ତାର ବିରକ୍ତ ହେବାର କାରଣ ଯେ ନାହିଁ ତାହା ନୁହେଁ । ମୁଁ ସାରାଦିନ କାମ କରୁଛି; ସେଥିରେ ଲୋକେ ମୋର ମଜୁରିଟିକ ମଧ୍ୟ ଦେବେ ନାହିଁ । ମୁଁ ସେମାନଙ୍କୁ ବାରମ୍ବାର ମାଗୁଛି । ଏହା ଛଡ଼ା ଆଉ କଅଣ ବା କରିପାରିବି ? ମୁଁ କଅଣ କହିବି—ମୋ ପଇସା ଦେବତ ଦିଅ, ନ ହେଲେ ତମ ପିଠିରୁ ଚମ ଉତାରି ଦେବି । ଏପରି କହିଲେ କଅଣ ସେମାନେ ଦେବେ ? ଏବେ ଜଣେ ଲୋକ ଅଧରୁବେଲ ମାତ୍ର ଦେଲା । ସେ କହୁଛି, ତା ପାଖରେ ଆଉ ପଇସା ନାହିଁ । ତା କଥା ବି ମିଛ ହୋଇ ନ ଥିବ । ଥିଲେ ନ ଦେଇଥାନ୍ତା

କାହିଁକି ? ଏତିକି ପଇସାରେ ମୁଁ କଅଣ କରିଥାନ୍ତି ? ବେଶ୍, ସେତିକି ମଦପିଅରେ ଗଲା । ମାତ୍ର ମୁଁ ଚଳିବି କିପରି ? ତମର ଘର ଅଛି, ଗୋରୁଗାଈ ଅଛନ୍ତି, ଜମିବାଡ଼ି ଅଛି ଓ ଜମିରୁ ଗହମ ପାଉଛ । ମାତ୍ର ମୋର ଅଛି କଅଣ ? ମୁଁ ଯାହା କମାଉଛି, ସେଥିରୁ ଗହମ କିଣାରେ ହପ୍ତାକୁ ତିନି ରୁବେଲ୍ ଯାଉଛି । ମୋର ପାଉଣାତକ ମୁଁ ନ ପାଇଲେ ମୋ କୁଟୁମ୍ବ ବଞ୍ଚିବେ କିପରି ? ଏଇକ୍ଷଣି ପାଖରେ ପଇସା ନାହିଁ; ପନ୍ଦର ଦିନ ପରେ ଦେବି—ଏଭଳି କହି ଭଣ୍ଡିଲେ ଚଳିବ କାହୁଁ ?"

ଏହିପରି ବିଚାରି ଯାଇ ଯାଇ ସାଇମନ ଯେତେବେଳେ ଗୀର୍ଜା ପାଖରେ ପହଞ୍ଚି ଗଲାଣି ସେ କଥା ତାର ମନେ ନାହିଁ । ସେ ଦେଖିଲା, ଗୀର୍ଜା ପଛପଟେ ଧଳା ହୋଇ କଅଣ ଗୋଟାଏ ଦିଶୁଛି । ସେତେବେଳକୁ ଅନ୍ଧାର ହୋଇଥାଏ । ଖୁବ୍ ନିରେଖି ଚାହିଁଲେ ମଧ୍ୟ ସାଇମନ ଏହି ଜିନିଷଟା କଅଣ ଜାଣି ପାରିଲା ନାହିଁ । ସେ ଭାବିଲା, "ଏଠିତ ଆଗରୁ କୌଣସି ଧଳା ପଥର ନଥିଲା—ତେବେ କଅଣ ଗୋଟାଏ ଧଳା ଷଣ୍ଢ ଶୋଇଛି ? କିନ୍ତୁ ଏହାର ଅଢାର ଷଣ୍ଢପରି ଦେଖାଯାଉ ନାହିଁ । ଉପରକୁ ଗୋଟାଏ ମଣିଷ ମୁଣ୍ଡ ପରି ଦିଶୁଛି । ମଣିଷ ହୋଇଥିଲେ ଏତେବେଳେ ଏଠାରେ ଏକୁଟିଆ ବସନ୍ତା କାହିଁକି ?"

ଜିନିଷଟାକୁ ଭଲକରି ଦେଖିବା ପାଇଁ ସେ ତାର ଖୁବ୍ ନିକଟକୁ ଆସିଲା । ଯାହା ଦେଖିଲା, ସେଥିରେ ତାର ବିସ୍ମୟର ସୀମା ରହିଲା ନାହିଁ । ଧଳା ପଦାର୍ଥଟି ପଥର ନୁହେଁ କି ଷଣ୍ଢ ନୁହେଁ; ପ୍ରକୃତରେ ଗୋଟିଏ ମନୁଷ୍ୟ । ତାର ଦେହରେ କୌଣସି ପୋଷାକ ନାହିଁ । ନିଶ୍ଚଳ ହୋଇ କାନ୍ଥକୁ ଆଉଜି ବସିଥିବାରୁ ଲୋକଟା ଜୀବିତ କି ମୃତ ଜଣାପଡ଼ୁନାହିଁ । ହଠାତ୍ ସାଇମନ ଭାବିଲା, "ବୋଧହୁଏ

କେହି ଲୋକଟାକୁ ହତ୍ୟା କରି ତାର ଲୁଗାପଟା ସୁଦ୍ଧା ସବୁ ନେଇ ଯାଇଛି । ଏହା ପାଖରେ ରହିଲେ ବିପଦ ଅଛି ।"

ଏହାପରେ ବାଟରେ ସାଇମନ ଚାଲି ଯିବାକୁ ଲାଗିଲା । ଗୀର୍ଜାର ଆଗପଟେ ଗଲାବେଳକୁ ଲୋକଟା ଆଉ ଦେଖାଗଲା ନାହିଁ । ଆଉ କିଛି ଦୂର ଯିବା ପରେ ପୁଣି ସେ ଲୋକଟି ଦେଖାଗଲା; ମାତ୍ର ସେତେବେଳକୁ ସେ କାନ୍ଥକୁ ଆଉଜି ବସି ନ ଥିଲା । ସେ ସିଧା ବସି ସାଇମନ ଆଡ଼କୁ ଚାହିଁ ଏପାଖ ସେପାଖ ହେଉଥିଲା । ସାଇମନ୍ ଠିଆ ହୋଇ ପୁଣି ଭାବିଲା, "ମୁଁ ମୋ ବାଟରେ ଚାଲିଯିବି କି ଲୋକଟା ପାଖକୁ ଯିବି ? ତା ପାଖକୁ ଗଲେ ହୁଏ ତ କିଛି ବିପଦ ଘଟିପାରେ । ଲୋକଟା କିଏ ? ଏଠାକୁ କାହିଁକି ଆସିଛି ? ତାର ଉଦ୍ଦେଶ୍ୟ କେବେହେଁ ଭଲ ହୋଇ ନପାରେ । ମୁଁ ତା ପାଖକୁ ଗଲାକ୍ଷଣି ସେ ଯେବେ ମୋର ତଣ୍ଟି ଚିପି ଧରେ ମୁଁ କରିବି କଅଣ ? ତା ନ କଲେ ମଧ୍ୟ ଲୋକଟା ମୋର ଚିନ୍ତାର କାରଣ ହେବ । ଗୋଟାଏ ପୂରା ଉଲଗ୍ନ ଲୋକକୁ ନେଇ କରିବି କଅଣ ? ମୋ ଦେହରେ ଯେଉଁ ପୋଷାକ ଅଛି, ତାକୁ ଦେଇ ପାରିବି ନାହିଁ । ଭଗବାନ ମୋତେ ଏ ଅଡୁଆରୁ ରକ୍ଷା କରନ୍ତୁ ।"

ସାଇମନ ପୁଣି ରାସ୍ତାକୁ ଚାଲି ଆସି ଘର ଆଡ଼କୁ ଯିବାକୁ ଲାଗିଲା । କିନ୍ତୁ ସେ ବେଶି ଦୂର ଯାଇ ପାରିଲା ନାହିଁ । ସେ ଠିଆ ହୋଇଯାଇ ଭାବିଲା, "ମୁଁ କରୁଛି କଅଣ ? ହୁଏତ ଲୋକଟି ଖାଇବା ବିନା ମରିବା ଉପରେ । ମୁଁ ଭୟରେ ତା ପାଖରୁ ପଳାଇ ଯାଉଛି । ସେ ଡକାୟତ ବି ହୋଇପାରେ । ହେଉ, ମୋର କଣ ଏତେ ଧନ ଅଛି ଯେ ମୁଁ ଡକାୟତକୁ ଭୟ କରିବି ? ଏପରି ଭାବରେ ଗୋଟାଏ ଲୋକକୁ ଛାଡ଼ି ଚାଲିଯିବା ମୋ ପକ୍ଷରେ ଘୋର ଲଜ୍ଜାର ବିଷୟ ।"

ଶେଷରେ ସେ ଗୀର୍ଜାର ପଛପଟକୁ ଫେରିଆସିଲା ।

( ଦୁଇ )

ସାଇମନ ଲୋକଟିର ନିକଟକୁ ଯାଇ ତାକୁ ଚାହିଁଲା । ଦେଖିଲା, ତାର ଯୁବା ବୟସ, ଦେହ ଖୁବ୍ ବଳିଷ୍ଠ, କୌଣସିଠାରେ କ୍ଷତ ବା ରୋଗର ଚିହ୍ନ ନାହିଁ । କେବଳ ସେ ଶୀତରେ ଥରୁଥିଲା ଓ ଭୟାର୍ତ୍ତ ହେଲପରି ଜଣାଯାଉଥିଲା । ସେ ସାଇମନ ଆଡ଼କୁ ନ ଚାହିଁ ବସିରହିଥାଏ । ସାଇମନ ତାର ଅତି ନିକଟକୁ ଯିବାରୁ ସେ ମୁହଁ ବୁଲାଇ ତାକୁ ଚାହିଁଲା । ଲୋକଟିର ମୁହଁ ଦେଖିଲା ମାତ୍ରେ ସାଇମନର ତା ପ୍ରତି ଶ୍ରଦ୍ଧା ଜାତ ହେଲା । ମରାମତିପାଇଁ ନେଉଥିବା ଜୋତା ଯୋଡ଼ିକ, ନିଜର କମରପଟି ଓ କପଡ଼ା କୋଟଟି ସେ ସେହି ଲୋକ ପାଖକୁ ପକାଇଦେଇ କହିଲା, "ଭାଇ, କଥାବାର୍ତ୍ତା ହେବାର ବେଳ ଏ ନୁହେଁ । ଶୀଘ୍ର କୋଟଟା ପିନ୍ଧିପକାଅ ।" ଏତିକି କହି ସେ ଲୋକଟିର ହାତ ଧରି ଉଠାଇ ଦେଲା । ସାଇମନ ଲକ୍ଷ୍ୟ କଲା, ଲୋକଟିର ଦେହ ଅତ୍ୟନ୍ତ ପରିଷ୍କୃତ; କୌଣସିଠାରେ ଟିକିଏ ହେଲେ ମଇଳା ଲାଗିନାହିଁ । ଦେହରେ ବେଶ୍ ବଳ ଥିଲା ପରି ମନେ ହୁଏ । ମୁହଁର ଗଠନ ଅତି ସୁନ୍ଦର । ସାଇମନ ତାକୁ କୋଟ୍‌ଟି ପିନ୍ଧାଇ ଦେଇ ତାର ଅଣ୍ଟାରେ କମରପଟିଟି ବାନ୍ଧିଦେଲା ।

ଲୋକଟି ଉପରେ ସାଇମନର ଏତେ ଦୟା ହେଲା ଯେ ସେ ନିଜ ମୁଣ୍ଡର ଟୋପିଟି ନେଇ ତା ମୁଣ୍ଡରେ ପିନ୍ଧାଇ ଦେବାକୁ ବସିଥିଲା । ଟୋପିଟି କାଢ଼ିବାମାତ୍ରେ ତାକୁ ଖୁବ୍ ଶୀତ ଲାଗିଲା । ସେ ଭାବିଲା, "ମୋର ଚନ୍ଦା ମୁଣ୍ଡକୁ ବେଶି ଶୀତ ହେଉଛି । ତା ମୁଣ୍ଡରେ ଗହଳିଆ ବାଳ ଅଛି । ତେଣୁ ତାର ଟୋପି ନ ହେଲେ ଚଳିଯିବ । ମାତ୍ର ତାର ପାଦକୁ ଖୁବ୍ ଶୀତ ହେଉଥିବ । ମୋ ଅପେକ୍ଷା ତାର ଜୋତା ବେଶି ଦରକାର । ସେ ଲୋକଟିକୁ ବସାଇ

ଦେଇ ତାକୁ ନିଜର ଜୋତା ଯୋଡ଼ିକ ଦେଲା ଓ ପିନ୍ଧିବାରେ ସାହାଯ୍ୟ ମଧ୍ୟ କଲା । ସାଇମନ କହିଲା, "ଭାଇ, ଏଥର ଚାଲ । ବେଗରେ ଚାଲିଲେ ଶୀତ କଷ୍ଟ ଜଣାଯିବ ନାହିଁ । ପରେ କଥା ବାର୍ତ୍ତା ହେବା । କଅଣ, ଚାଲି ପାରିବ ତ ?"

ଲୋକଟି କିଛି ମାତ୍ର ଉତ୍ତର ନ ଦେଇ କେବଳ ଚାହିଁ ରହିଲା ।

ସାଇମନ ବିସ୍ମିତ ହୋଇ ପଚାରିଲା, "କିଛି କହୁନାହଁ କାହିଁକି ? ଏଠି ଶୀତରେ ରହିବା ହେବନାହିଁ । ଘରକୁ ଯିବା ଦରକାର । ମୋର ଠେଙ୍ଗାଟା ଧର । ବୋଧହୁଏ ଦୁର୍ବଳ ଲାଗୁଛି । ଠେଙ୍ଗାଟା ଧରିଲେ ଚାଲିବାକୁ ବଳ ଆସିବ ।"

ଲୋକଟି କିଛି ନ କହି ଚାଲିବାକୁ ଲାଗିଲା ।

ବାଟରେ ଯାଉ ଯାଉ ସାଇମନ ପଚାରିଲା, "ଭାଇ, ତୁମ ଘର କେଉଁଠି ?"

ଅତିଥି—ମୁଁ ଏ ଅଞ୍ଚଳର ଲୋକ ନୁହେଁ ।

ସାଇମନ—ତୁମକୁ ଦେଖିଲା ବେଳୁ ମୁଁ ସେକଥା ଅନୁମାନ କରିଥିଲି । ମୁଁ ଏ ଅଞ୍ଚଳର ପ୍ରାୟ ସବୁ ଲୋକଙ୍କୁ ଚିହ୍ନେ । ତେବେ ତୁମେ ସେ ଗୀର୍ଜା ପଛକୁ ଆସିଲ କିପରି ?

ଅତିଥି—ତା ମୁଁ କହିପାରିବି ନାହିଁ ।

ସାଇମନ—କେହି କଅଣ ତୁମ ଉପରେ ଅତ୍ୟାଚାର କରୁଥିଲା ?

ଅତିଥି—ନାଁ, ମୋପ୍ରତି କେହି ଦୁର୍ବ୍ୟବହାର କରିନାହିଁ । ଈଶ୍ୱର ମୋତେ ଦଣ୍ଡ ଦେଇଛନ୍ତି ।

ସାଇମନ—ଈଶ୍ୱର ହେଉଛନ୍ତି କର୍ତ୍ତା, ସର୍ବେସର୍ବା । ତାଙ୍କ ଶାସନରୁ କିଏ ବାହାରିପାରେ ? ତଥାପି ତୁମକୁ ଖାଇବାପାଇଁ

ଖାଦ୍ୟ ଓ ରହିବାପାଇଁ ଘରଟିଏ କୌଣସିଠାରେ ଯୋଗାଡ଼ କରିବାକୁ ହେବ । ତୁମେ କେଉଁଠାକୁ ଯିବ ବୋଲି ଭାବିଛ ?

ଅତିଥି—ଯେକୌଣସି ଜାଗାକୁ ଯିବାରେ ମୋର କିଛି ଆପତ୍ତି ନାହିଁ ।

ଏହି ଉତ୍ତର ଶୁଣି ସାଇମନ ନିତାନ୍ତ ବିସ୍ମିତ ହୋଇଗଲା । ଲୋକଟିର ସ୍ୱଭାବ ଭଲ ଜଣାଯାଉଛି; ଭଲ କଥା କହୁଛି; ଅଥଚ ସେ କିଏ ଓ କେଉଁଠୁ ଆସିଲା ସେକଥା କହୁନାହିଁ । ସାଇମନ ଭାବିଲା, "ଲୋକଟାର କଅଣ ହୋଇଛି କିଏ ଜାଣେ ?" ପ୍ରକାଶ୍ୟରେ କହିଲା, "ତା ହେଲେ ମୋ ଘରକୁ ଚାଲ । ସେଠାରେ କିଛି ସମୟ ନିଆଁ ପାଖରେ ବସିଲେ ଦେହଟା ଉଷୁମ ହୋଇଯିବ ।"

ଲୋକଟି ସାଇମନ ପାଖେ ପାଖେ ଚାଲିଥାଏ । ଏଥିମଧ୍ୟରେ ପବନର ବେଗ ବଢ଼ିଯାଇଥାଏ ଓ ସାଇମନ ବେଶି ଶୀତ ଅନୁଭବ କରୁଥାଏ । ମଦର ମାଦକତା ମଧ୍ୟ ଛାଡ଼ିଆସିଥାଏ । ସେ ନିଜେ ପିନ୍ଧିଥିବା ସ୍ତ୍ରୀର କୋଟଟିକୁ ଟାଣି ଦେହକୁ ଲଗାଇ ଧରିଲା । ଶୀତର ଦାଉ ଟିକିଏ କମ୍ ବୋଧହେଲା । ସେ ମନେ ମନେ ଭାବିଲା, "ଏବେ ଅଚ୍ଛା କଥା ହେଲା । ଶୀତରୁ ରକ୍ଷାପାଇବାପାଇଁ ଗୋଟିଏ କୋଟ୍ ସକାଶେ ମେଣ୍ଢାଚମଡ଼ା କିଣିବାକୁ ଯାଇଥିଲି । ଚମଡ଼ା କିଣା ହେଲା ନାହିଁ । ଦେହରେ ଯାହା ପିନ୍ଧି ଯାଇଥିଲି, ସେଥିରୁ ଖଣ୍ଡିଏ ପୁଣି ଅନ୍ୟକୁ ଦେଇଛି । ଅଧିକନ୍ତୁ ମଧ୍ୟ ସାଥିରେ ଯେଉଁ ଅତିଥିଟିକୁ ନେଇ ଯାଉଛି, ତାର ଅଦୌ ପୋଷାକ ନାହିଁ । ଏଥିରେ ମାଟ୍ରେନା ନିଶ୍ଚୟ ମୋ ଉପରେ ବିରକ୍ତ ହେବ ।" ଏହିପରି ଭାବି ସେ ମନେ ମନେ ଚିନ୍ତିତ ହେଲା; କିନ୍ତୁ ଅତିଥିଟିର ମୁହଁକୁ ଚାହିଁ, ତାର କରୁଣ ଅବସ୍ଥା ମନେପକାଇ ତାକୁ ସାମାନ୍ୟ ସାହାଯ୍ୟ କରିପାରିଥିବାରୁ ସାଇମନ୍ ମନରେ ଆନନ୍ଦ ଜାତ ହେଲା ।

( ତନି )

ସେଦନ ସକାଳୁ ସାଇମନର ସ୍ତ୍ରୀ ମାଟ୍ରେନା ସବୁ କାମ ସାରିଦେଲା । କାଠ କରି ପାଣି ଆଣି ରଖିଲା; ପିଲାଙ୍କୁ ଖୁଆଇ ନିଜେ ଖାଇଲା । ତା'ପରେ ବସି ଭାବିଲା—ରୁଟି କରିବ କି ତା ଆରଦନ କରିବ । ଘରେ ବଡ଼ ରୁଟିଟାଏ ଅଛି । ସାଇମନ ଯଦ ସହରରେ ଖାଇ ଘରକୁ ଆସେ, ତାହାହେଲେ ସେଇ ରୁଟିରେ ଆରଦନଟା ମଧ୍ୟ ଚଳିଯିବ । ରୁଟିଟିକୁ ସେ ହାତରେ ଧରି ମନେ ମନେ ହସାବ କରୁଥାଏ, "ଆଜ ରୁଟି କରିବି ନାହିଁ । ଘରେ ଖୁବ୍ ଅଳ୍ପ ମଇଦା ଅଛି । କଷିକରି ଖରଚ କଲେ ଶୁକ୍ରବାରଯାଏ ଚୃଳିଯିବ ।"

ଏହିପରି ଚିନ୍ତା କରି ସେ ରୁଟି ରଖିଦେଇ ସାଇମନର ଖଣ୍ଡିଏ କରିଆ ଜାମା ମରାମତି କରିବାକୁ ବସିଲା । ସ୍ୱାମୀ କିଭଳି ମେଣ୍ଢାଚମଡ଼ା ନେଇ ଆସିବ ସେଇକଥା ଭାବୁଥାଏ—"ମୋ ସ୍ୱାମୀ ଅତି ସାଧାସିଧା ମଣିଷ । ତାକୁ କିଅଣ ଦୋକାନୀ ଠକିଦେବ ? ସେ କାହାକୁ ଠକେ ନାହିଁ ସତ, ମାତ୍ର ଛୋଟ ପିଲାଟାଏ ବି ତାକୁ ଠକି ଦେଇ ପାରିବ । ଆଠ ରୁବେଲ୍ ନେଇଥିବ । ଏତିକିଗୁଡ଼ାଏ ଟଙ୍କାରେ ଗୋଟାଏ ଖୁବ୍ ଭଲ ଚମଡ଼ା ମିଳିବ ଓ ଗୋଟାଏ ଚମଡ଼ାରେ ଭଲ କୋଟଟାଏ ହେବ । ଗରମକୋଟ ବିନା ଗଲା ବର୍ଷ ଶୀତଦନେ ବଡ଼ କଷ୍ଟ ହେଲା । ମୁଁ ପଦାକୁ ବାହାରି ପାରିଲି ନାହିଁ । ସେ ବାହାରକୁ ଗଲେ ସବୁ ପିନ୍ଧି ଯାଏ; ମୁଁ ପିନ୍ଧିବି କିଅଣ ? ଆଜ ସେ ଘରୁ ବାହାରିଲା ବେଳକୁ ଟିକିଏ ଡେରି ହୋଇଥିଲା । ବେଳ ହୋଇଗଲାଣି । ଏତେବେଳଯାଏ ଆସିଲା ନାହିଁ କାହିଁକି ! ଯାହାହେଉ ସେ ମଦ ପିଇ ନଥିବ କି ?"

ସେ ଏହିପରି ଭାବୁଛି, ଏହି ସମୟରେ ଦୁଆର ମୁହଁରେ ପାଦଶବ୍ଦ ଶୁଣାଗଲା । ସେ ସୂତା ଛୁଞ୍ଚି ରଖିଦେଇ ଦୁଆରମୁହଁକୁ ଯାଇ ଦେଖିଲା, ତାର ସ୍ୱାମୀ ଆସିଛି; ତା ସାଥିରେ ଆଉ କିଏ ଜଣେ ଅଛି । ସେ ଲୋକଟାର ପାଦରେ ଜୋତା ଅଛି, ମାତ୍ର ମୁଣ୍ଡରେ ଟୋପି ନାହିଁ ।

ମାତ୍ରେନା ମୁହଁ ଭିତରେ ମଦର ଗନ୍ଧ ବାରି ନେଇ ଭାବିଲା —"ସେ ଯାଇ ମଦ ପିଇଥିଲା । ତା କପଡ଼ା କୋଟ୍ ଦେହରେ ନାହିଁ । ମେଣ୍ଢାଚମଡ଼ା ଆଣିନାହିଁ । ଟଙ୍କା ନେଇଥିଲା, କଲା କଅଣ ?" ସାଇମନ ସ୍ତ୍ରୀର ମନର ଭାବ ଜାଣିପାରି ଦୁଆର ପାଖରେ ଚୁପ୍‌କରି ଠିଆ ହେଲା । ମାତ୍ରେନା ଭାବୁଥାଏ, "ସେ ନିଶ୍ଚୟ ସବୁ ଟଙ୍କା ମଦରେ ଉଡ଼େଇ ମଉଜ କରୁଥିଲା । ସେଥିରେ ପୁଣି ଗୋଟାଏ ଛତରା ବଦମାସକୁ ସାଥିରେ ଘେନି ଘରକୁ ଆସିଛି ।"

ଯାହାହେଉ ସାଇମନ ଓ ଅତିଥି ଘର ଭିତରକୁ ପଶିଲେ । ମାତ୍ରେନା ସେ ଦୁହିଁଙ୍କ ପଛରେ ଗଲା । ଦେଖିଲା, ଲୋକଟା ବେଶ୍ ସୁସ୍ଥସବଳ । ତା ଦେହରେ ସାଇମନର କପଡ଼ା କୋଟ । ଏହି କୋଟଟି ଛଡ଼ା ତା ଦେହରେ ଆଉ କିଛି ପୋଷାକ ନାହିଁ । ମୁଣ୍ଡରେ ଟୋପି ମଧ୍ୟ ନାହିଁ । ଲୋକଟା ଘର ଭିତରକୁ ଆସି କୁଆଡ଼କୁ ନ ଚାହିଁ ଛିଡାହୋଇ ରହିଲା । ମାତ୍ରେନା ମନେ ମନେ ସ୍ଥିର କଲା—ଲୋକଟା ଏତେ ଡରୁଛି କାହିଁକି ? ନିଶ୍ଚୟ ଗୋଟାଏ ଖରାପ ଲୋକ ହୋଇଥିବ ।

ସେତେବେଳକୁ ମାତ୍ରେନା ମନରେ ଭୟ ରାଗ । ସେ ନିଆଁକୁଣ୍ଡ ପାଖରେ ଠିଆହୋଇ ଏ ଦୁହିଁଙ୍କୁ ଚାହିଁଥାଏ ।

ସାଇମନ କିଛି ନ ଜାଣିଲା ପରି ମୁଣ୍ଡରୁ ଟୋପିଟି ବାହାର କରିଦେଇ ଟେବୁଲ ପାଖରେ ବସି କହିଲା, "ମାତ୍ରେନା, ରନ୍ଧାବଢ଼ା ସରିଥିଲେ ଆମକୁ ଖାଇବାକୁ ଦେ ।"

ମାନେନା ନିଜ ଜାଗାରେ ବସିରହି ରାଗରେ ଗୁଁ ଗୁଁ ହେଉଥାଏ । ଖାଲି ସ୍ୱାମୀକୁ ଓ ଅତିଥିକୁ ଟିକିଏ ଚାହୁଁଥାଏ । ସାଇମନ ବୁଝିପାରିଲା, ମାନେନା ଖୁବ୍ ରାଗିଛି; ମାତ୍ର ସେ କିଛି ନ ଜାଣିଲା ପରି ଅତିଥିର ହାତ ଧରି ଖାଇବା ଜାଗାକୁ ନେଇ ବସାଇ ଦେଲା ।

ଦୁହେଁ ଯାଇ ବସିଲେ; କିନ୍ତୁ ମାନେନା କିଛି ଖାଇବାକୁ ନ ଆଣିବାରୁ କିଛି ସମୟ ପରେ ସାଇମନ ପଚାରିଲା, "ଆଜି କଅଣ କିଛି ରନ୍ଧା ହୋଇନାହିଁ ?"

ମାନେନା ଆଉ ସମ୍ଭାଳି ନ ପାରି କହିଲା, "ରାନ୍ଧିଛି; ହେଲେ ତୁମ ପାଇଁ ରାନ୍ଧି ନାହିଁ । ମଦ ପିଇ ପିଇ ତୁମର ବୁଦ୍ଧି ଶୁଦ୍ଧି ଲୋପ ପାଇଗଲାଣି । ତୁମେ ଯାଇଥିଲ ମେଣ୍ଢାଚମଡ଼ା କିଣିବା-ପାଇଁ । ଚମଡ଼ା କଥା ଛାଡ଼, ନିଜ କୁର୍ତ୍ତାଟି ମଧ୍ୟ କାହାକୁ ଦେଇ ଆସିଛ । ସେଥିରେ ପୁଣି ସାଙ୍ଗରେ କେଉଁଠୁ ଜଣେ ଲଫଙ୍ଗାକୁ ଘେନି ଆସିଛ । ତୁମଭଳି ମଦଡ଼ଙ୍କ ପାଇଁ ମୁଁ ରାନ୍ଧି ରଖିନାହିଁ ।"

ସାଇମନ ଧୀର ଭାବରେ କହିଲା, "ମାନେନା, ସେତିକି ହୋଇଥାଉ, ଆଉ କହିବା ଦରକାର ନାହିଁ । ଆଗେ ଘଟଣାଟା ଜାଣିବାକୁ ଚେଷ୍ଟା କର । ମୋର ଏ ଅତିଥି ଜଣେ କିପରି ଲୋକ, ତା ନ ବୁଝି ଏପରି କହିବା କଅଣ ଠିକ୍ ହେଉଛି ?"

ମାନେନା—ତୁମେ ଟଙ୍କା ନେଇ କଅଣ କଲ, ଆଗ ମୋତେ କହିଲ ।

ସାଇମନ ଜୁବେଲ୍ ତନୋଟି ପକେଟରୁ ବାହାର କରି ଟେବୁଲ୍ ଉପରେ ରଖିଦେଇ କହିଲା, "ଏଇ ଦେଖ ତୁମ ଟଙ୍କା । ଟ୍ରିଫନଭ୍ ଆଜି ଦେଇପାରିଲା ନାହିଁ; ଅଳ୍ପ ଦିନ ଭିତରେ ଦେବି ବୋଲି କହିଛି ।"

ଏଥିରେ ମାଟ୍ରେନାର ରାଗ ଊଣା ହେଲା ନାହିଁ । ସେ ରୁବେଲ୍‌ଟିକୋଟି ନେଇ ଯାଇ କହିଲା, "ନାହିଁ, ତୁମ ପାଇଁ ରନ୍ଧା ହୋଇ ନାହିଁ । ଆମର ଏତେ ଧନ ନାହିଁ ଯେ ଦୁନିଆ ଯାକର ଛତର ମଦତିଙ୍କି ଡାକି ଖାଇବାକୁ ଦେବା ।"

ସାଇମନ କହିଲା, "ଟିକଏ ପାଟି ବନ୍ଦକର ମୋ କଥାଟା ଶୁଣ ।"

ମାଟ୍ରେନା—ତୁମ ଭଳି ମଦତଙ୍କ କଥା ଶୁଣିବାକୁ ମୋର ବେଳ ନାହିଁ । ମୁଁ ସେଥିପାଇଁ ତୁମକୁ ବାହା ହେବାକୁ ରାଜି ହେଉ-ନଥିଲି । ମୋ ମାଆ ମୋତେ ଯେଉଁ ବାଛଣାଗୁଡ଼ାକ ଦେଇଥିଲା ତାକୁ ମଧ୍ୟ ତୁମେ ବିକି ମଦ ପିଇଛ । ଏବେ ଯେଉଁ ଟଙ୍କା ଥିଲା, ସେଥିରେ ଗୋଟାଏ କୋଟ୍ କିଣି ପାରିଥାନ୍ତ । ତାକୁ ମଦରେ ଉଡ଼େଇ ଦେଲ ।"

ସାଇମନ ମାତ୍ର ଅଧରୁବଲ୍‌ର ମଦ ପିଇଛି ଓ ଲୋକଟିକୁ ଅତି ହୀନ ଅବସ୍ଥାରେ ଦେଖି ସାଥିରେ ଆଣିଛି-ଏଇ କଥା ବୁଝାଇ କହିବାକୁ ସେ ଚେଷ୍ଟା କଲା; ମାତ୍ର ମାଟ୍ରେନା କିଛି ଶୁଣିବାକୁ ପ୍ରସ୍ତୁତ ନଥିଲା । ତାର ମୁହଁରୁ କଥାର ସୁଅ ଛୁଟି ଥାଏ । ବିବାହ ଦିନଠାରୁ ଏଯାଏ ମଧ୍ୟରେ ସାଇମନ ଉପରେ ଯେତେ ଦୁର୍ବ୍ୟବହାର କରି ଆସିଛି ତାହାହିଁ ମାଟ୍ରେନାର ବକ୍ତୃତାର ବିଷୟ ।

ଅନେକ ବେଳଯାଏ ମାଟ୍ରେନା ଏହିପରି କହି କହି ଶେଷରେ ସାଇମନର ଦେହରୁ କୁରୁତାଟା ଟାଣି କହିଲା, "ମୋ କୁରୁତା ଦେଇ ପକାଅ । ତୁମକୁ ଲାଜ ମାଡ଼ୁ ନ ? ମୋର ଏଇ ଖଣ୍ଡିକ କୁରୁତା । ନିଜପାଇଁ ଖଣ୍ଡେ କୁରୁତା କିଣିବାକୁ ବଳ ନାହିଁ । ସେଥିରେ ମୋ କୁରୁତାଟି ପିନ୍ଧି ଭଦ୍ରଲୋକପରି ବସିଛ ?"

ସାଇମନ କୁରୁତା ଖଣ୍ଡିକ ଦେହରୁ ବାହାର କରିବାକୁ ବସିଲ । ସେ କୁରୁତାର ଗୋଟାଏ ହାତ ବାହାର କରୁ କରୁ ମାଟେନା କୁରୁତାକୁ ଟାଣି ନେଇଗଲ । ଏତେ ଜୋର୍‌ରେ ଟାଣିବାରୁ ସେଥିରୁ କିଛି ଚିରିଗଲ । ସେ ଗୃହ ଯିବାକୁ ବସିଛୁ, ମାଟ ଗୋଟା ମର ନ ଥାଏ । ସ୍ୱାମୀ ଉପରେ ଆଉ କିଛି ଗାଳି ବୃଷ୍ଟି କରିବା ତାର ଇଚ୍ଛା । ପୁଣି ଅତିଥିଟି ପ୍ରକୃତରେ କିପରି ଲୋକ ତାହା ଜାଣିବାକୁ ମନ ହେଉଥାଏ । ତେଣୁ ସେ ଘରୁ ବାହାରି ଗଲ ନାହିଁ ।

( ଚାରି )

ମାଟେନା ସ୍ୱାମୀକୁ କହିଲ, "ଏମ ଅତିଥିଟି ଭଲ ଲୋକ ହୋଇଥିଲେ ନିଶ୍ଚୟ କିଛି ପୋଷାକ ପିନ୍ଧିଥାନ୍ତା । ତା ଦେହରେ ଖଣ୍ଡେ ଗେଞ୍ଜି ସୁଦ୍ଧା ନାହିଁ । ପୁଣି ଏପରି ଲୋକଟିଏ ଯେ କାହୁଁ ପାଇଲ, ସେ କଥା କହୁନାହଁ କାହିଁକି ?"

ସାଇମନ କହିଲ, "ମୁଁ ଠିକ୍ ସେଇ କଥା ତୁମକୁ କହିବାକୁ ଚାହେଁ । ମୁଁ ଘରକୁ ଫେରିଲ ବେଳେ ଲୋକଟି ଗୀର୍ଜା ପଛପଟେ ବସିଥିବାର ଦେଖିଲି । ତା ଦେହରେ କିଛି ହେଲେ ଲୁଗାପଟା ନ ଥିଲା, ଶୀତରେ ଥରୁଥିଲା । ମୁଁ ତାକୁ ଦେଖି ନ ଥିଲେ ସେ ସେହିଠାରେ ପଡ଼ି ମରିଥାନ୍ତା । ଈଶ୍ୱର ମୋତେ ସେଠାକୁ ନେଇ ପହଞ୍ଚାଇ ଦେଲେ ବୋଲି ମୁଁ ବିଚାରୁଛି । ମୁଁ ତାକୁ ଦେଖି ନ ଥିଲେ ତାର କଅଣ ହୋଇଥାନ୍ତା କିଏ କହିବ ? ମୁଁ ତାକୁ ସେ ଅବସ୍ଥାରେ ଛାଡ଼ି ଅସିଥାନ୍ତି କିପରି ? ସେଇଥିପାଇଁ ମୁଁ ତାକୁ କୁରୁତା ଖଣ୍ଡିଏ ଦେଇ ଏଠାକୁ ନେଇ ଆସିଛି । ମାଟେନା, ତୁମକୁ

ମୋ ରାଣ; ଅଜ ସେମିତ ରାଗ କର ନାହିଁ । ରାଗ ପରମ ଶତ୍ରୁ ।
ଅଚ୍ଛା, ଲୋକଟିକୁ ଦୟା କରିବା କଅଣ ମୋର ଅନ୍ୟାୟ ହେଲା ?”

ମାଟ୍ରେନା ରାଗରେ କଅଣ ଗୁଡ଼ାଏ କହି ଯାଉଥାନ୍ତା; କିନ୍ତୁ ଅତିଥିର ମୁହଁକୁ ଚାହିଁ ଦେଇ ଚୁପ୍ ହୋଇ୍ ରହିଗଲା । ଅଚଳ ପ୍ରତିମା ଭଳି ଲୋକଟି ବସିଛି । ହାତ ଦିଓଟି ଯୋଡ଼ ହୋଇ ଅଣ୍ଟୁ ଉପରେ ରହିଛି ଓ ମୁଣ୍ଡଟି ତଳକୁ ନଇଁ ପଡ଼ିଛି । ଆଖି ବୁଇଟି ବନ୍ଦ । ମାଟ୍ରେନା ଏପରି କରୁଣ ମୂର୍ତ୍ତି ଦେଖି ବଦଳିଗଲା । ତାର ରାଗ କୁଆଡ଼େ ଉଭେଇ ଗଲା । ଏହି ସମୟରେ ସାଇମନ କହିଲା, “ତୁମର କଅଣ ଈଶ୍ୱରଙ୍କଠାରେ ଟିକିଏ ହେଲେ ଭକ୍ତି ନାହିଁ ?”

ହଠାତ୍ ତା ମନରେ ଲୋକଟି ପ୍ରତି ଦୟା ଅସିଲା । ସେ ଚୁଲି ପାଖକୁ ଯାଇ ରୁଟିଟି ଅଣିଲା । ରୁଟି ସହିତ ଗୋଟିଏ ପାତ୍ରରେ କିଛି ମଦ ଟେବୁଲ ଉପରେ ରଖିଦେଲା । କହିଲା, “ଏତିକି ଅଛି, ଖାଇବ ତ ଖାଅ ।”

ସାଇମନ ଛୁରୀରେ ରୁଟି କାଟି ଅତିଥିକୁ ଖାଇବାକୁ ଦେଲା; ନିଜେ ମଧ୍ୟ ଖାଇଲା । ମାଟ୍ରେନା ଟେବୁଲର ଗୋଟାଏ ପାଖରେ ବସି ଏହି ଅଦ୍ଭୁତ ଅତିଥିଟିକୁ ଚାହିଁଥାଏ, ସେ ଅତିଥିକୁ ଯେତିକି ଚାହିଁଲା, ତା ପ୍ରତି ତାର ସେତିକି ଦୟା ଅସିଲା । ସେ ଦେଖିଲା, ଅତିଥିର ମୁହଁରୁ ଦୁଃଖର ଛାୟା କୁଆଡ଼େ ଉଭେଇ ଯାଇଛି ଓ ସେଥିରୁ ଗୋଟାଏ ଉଜ୍ଜ୍ୱଳ ଜ୍ୟୋତି ବାହାରୁଛି । ଲୋକଟି ମୁହଁ ଟେକି ମାଟ୍ରେନା ଅଡ଼କୁ ଚାହିଁ ଟିକିଏ ହସିଲା ।

ଭୋଜନ ଶେଷରେ ମାଟ୍ରେନା ବାସନ ଉଠାଇ ନେଇ ଅତିଥି ପାଖରେ ବସି ପଚାରିଲା, “ଅପଣ କେଉଁଠାରୁ ଅସ ଛନ୍ତି ?”

ଅତିଥି ଉତ୍ତର କଲା; “ମୁଁ ଏ ଅଞ୍ଚଳର ଲୋକ ନୁହେଁ ।”

ମାଟ୍ରେନା—ତେବେ ଅପଣ ଗୀର୍ଜା ପାଖକୁ ଅସିଲେ କପରି ?

ଅତଥି—ସେ କଥା କହିବାକୁ ମୋତେ ମନା ଅଛି ।

ମାଟ୍ରେନା—କିଏ କଣ ଅପଣଙ୍କର ଜିନିଷପତ୍ର ଚୋରିକରି ନେଲା ?

ଅତଥି—ନାଁ, ଈଶ୍ୱର ମୋତେ ଦଣ୍ଡ ଦେଇଛନ୍ତି ।

ମାଟ୍ରେନା—ଅପଣ ଗୀର୍ଜା ପାଖରେ ଥିଲାବେଳେ ଅପଣଙ୍କ ଦେହରେ କିଛି ମାତ୍ର ଲୁଗାପଟା ନ ଥିଲା ?

ଅତଥି—ନାଁ, କିଛି ନ ଥିଲା । ମୋତେ ଭାରି ଥଣ୍ଡା ଲାଗୁଥିଲା । ମୋତେ ଦେଖି ସାଇମନଙ୍କର ଦୟା ହେଲା । ସେ ନିଜ ଦେହରୁ କୁର୍ତ୍ତାଟି କାଢ଼ି ମୋ ଦେହରେ ପିନ୍ଧାଇ ଦେଲେ । ସେ ମୋତେ ଏଠାକୁ ଅଣିଲେ; ତୁମେ ମୋତେ ଖାଇବାକୁ ଓ ପିଇବାକୁ ଦେଇ ଦୟା ଦେଖାଇ ଅଛ । ଏଥିପାଇଁ ଈଶ୍ୱର ତୁମମାନଙ୍କର ମଙ୍ଗଳ କରିବେ ।

ମାଟ୍ରେନା ସେଠାରୁ ଉଠିଯାଇ ସେଇ ଦିନ ମରାମତି କରିଥିବା ସାଇମନର କୁର୍ତ୍ତାଟି ଅଣି ଅତଥିକୁ ଦେଲା । ତା ସଙ୍ଗେ ଖଣ୍ଡିଏ ପୁରୁଣା ଚିରା ପାଇଜାମା ମଧ୍ୟ ଦେଲା । କହିଲା, "ଅପଣଙ୍କ ଦେହରେ ଜାମା ଖଣ୍ଡିଏ ସୁଦ୍ଧା ନାହିଁ । ଏହି ପାଇଜାମା ଓ କୁର୍ତ୍ତା ପିନ୍ଧି ଯେଉଁଠି ଇଚ୍ଛା ଶୋଇପଡ଼ନ୍ତୁ ।"

ମାଟ୍ରେନା ଅପଣାର କୋଠରିଟି ଘୋଡ଼ି ହୋଇ ଶୋଇଲା; କିନ୍ତୁ ତା ଅଖିକୁ ନିଦ ଅସିଲା ନାହିଁ । ବିଛଣାରେ ପଡ଼ି ରହି ସେ ଏହି ଅଦ୍ଭୁତ ଲୋକଟିର କଥା ଭାବୁଥାଏ । ତାର ମନେପଡ଼ିଗଲା, ଘରେ ଅଉ ରୁଟି ନାହିଁ । ଯେଉଁଟି ଥିଲା, ଅଜି ରାତିରେ ଶେଷ

ହୋଇ ଯାଉଛି । ସେ ଅଡିଥିକୁ ପାଇଜାମା ଓ କୁର୍ତ୍ତା ଦେଇ ପକାଇଥିବାରୁ ମନ ଦୁଃଖ କଲା । କିନ୍ତୁ ପର ମୁହୂର୍ତ୍ତରେ ମନେ ପଡ଼ିଗଲା. ଲୋକଟିକୁ ପାଇଜାମା ଓ କୁର୍ତ୍ତା ଦେଲାବେଳେ ତା ମୁହଁରେ କେଡ଼େ ମଧୁର ହସ ଫୁଟିଉଠିଥିଲା; ତା ମନରୁ ଦୁଃଖ ଚାଲିଗଲା ଓ ସନ୍ତୋଷ ଆସିଲା ।

ମାଟ୍ରେନାକୁ ନିଦ ହେଉ ନ ଥାଏ । ସେ ଦେଖିଲା ସାଇମନ ମଧ୍ୟ ଶୋଇନାହିଁ । ସେ ସ୍ୱାମୀକୁ ଡ଼ାକିଲା ।

ସାଇମନ କହିଲା—କଅଣ କହୁଛ ?

ମାଟ୍ରେନା—ମୁଁ କହୁଥିଲି ଯେ କାଲିକି ଘରେ ରୁଟି ନାହିଁ; କାଲି କଅଣ ଖାଇବା ? ମାର୍ଥା ଘରୁ କିଛି ମଇଦା ଉଧାର ଆଣିବାକୁ ବସୁଛି ।

ସାଇମନ—ହଁ, ଜୀବନ ଥିଲେ ଭଗବାନ କିଛି ଆହାର ଜୁଟାଇଦେବେ ।

ମାଟ୍ରେନା—ସେ ଅତିଥିଟି ଭଲ ମଣିଷ ପରି ଜଣାଯାଉଛି । କିନ୍ତୁ ତାର କିଛି ପରିଚୟ ଦେଉନାହିଁ କାହିଁକି ?

ସାଇମନ—ସେଥିର କୌଣସି ବିଶେଷ କାରଣ ଥିବ ।

ମାଟ୍ରେନା—ମୋର ଗୋଟାଏ ସନ୍ଦେହ ହେଉଛି । କହ ଦେଖି, ଆମର ଶକ୍ତି ଅନୁସାରେ ଆମେ ଦେଉଛୁ; କିନ୍ତୁ କେହି ଆମକୁ କିଛି ଦେଉନାହାନ୍ତି କାହିଁକି ?

ସାଇମନ ଭାବି ଭାବି ଏଥିର କିଛି ଉତ୍ତର ପାଇଲା ନାହିଁ । ସେ କହିଲା, "ସେକଥା ଭାବିବା ଦରକାର ନାହିଁ । ଆସ, ଶୋଇପଡ଼ିବା ।"

(ପାଞ୍ଚ)

ସାଇମନ ସକାଳେ ବିଛଣାରୁ ଉଠିଲା । ପିଲାମାନେ ଉଠି ନ ଥାନ୍ତି । ମେଟ୍ରେନା ଜଣେ ପଡ଼ୋଶି ଘରକୁ ଯାଇଥାଏ କିଛି ମଇଦା ଉଧାର ଆଣିବା ପାଇଁ । ଅତିଥି ଜଣକ ସେହି ପୁରୁଣା ପାଇଜାମା ଓ କୁର୍ତ୍ତା ପିନ୍ଧି ଘର ଭିତରେ ବସିଥାଏ । ତାର ଆଖି ଯୋଡ଼ିକ ଉପରକୁ । ମୁହଁଟି ପୂର୍ବଦିନ ଅପେକ୍ଷା ଟିକିଏ ପ୍ରଫୁଲ୍ଲ ଦିଶୁଥାଏ ।

ସାଇମନ ତାକୁ କହିଲା, "ଭାଇ, ମଣିଷମାନେ ଗୃହେଁ ପେଟକୁ କିଛି ଖାଇବ, ଦେହରେ କିଛି ଘୋଡ଼େଇ ହେବ । ସେଥିି ଖାଇବା ପିନ୍ଧିବା ପାଇଁ କାମ କରିବାକୁ ପଡ଼ିବ । ତୁମେ କ କାମ ଜାଣ ?"

• "ମୁଁ ତ କୌଣସି କାମ ଜାଣେ ନାହିଁ"—ଅତିଥି ଅନାସକ୍ତ ଭାବରେ ଉତ୍ତର ଦେଲା ।

ସାଇମନ ଏହା ଶୁଣି ବିସ୍ମିତ ହେଲା । ସେହି ଭାବ ଲୁଚେଇ ରଖି ସେ କହିଲା, "ଶିଖିବାକୁ ଇଚ୍ଛା ଥିଲେ ମନୁଷ୍ୟ ଯେ କୌଣସି କାମ ଶିଖିପାରେ ।"

"ହଁ, ମନୁଷ୍ୟମାନେ କାମ କରନ୍ତି । ମୁଁ ମଧ୍ୟ କାମ କରିବି ।" ଅତିଥି ଉତ୍ତର କଲେ ।

ସାଇମନ ପଚାରିଲା, "ତୁମର ନାମ କଅଣ ?"

ଅତିଥି—"ମାଇକେଲ ।"

ସାଇମନ—"ଅଚ୍ଛା ମାଇକେଲ, ତୁମେ ନିଜ ବିଷୟରେ କିଛି ପ୍ରକାଶ କରିବାକୁ ଇଚ୍ଛା କରୁନାହଁ । ସେଥିରେ ମୋର କିଛି କ୍ଷତି ନାହିଁ । କିନ୍ତୁ ତୁମକୁ ପରିଶ୍ରମ କରି ତୁମର ଆହାର ଯୋଗାଡ଼ କରିବାକୁ ହେବ । ଯଦି ତୁମେ ମୋ କଥା ଅନୁସାରେ କାମ କରି ପାରିବ, ମୁଁ ତୁମକୁ ଖାଇବାକୁ ଦେଇପାରିବି ଓ ତୁମେ ମୋ ଘରେ ରହିପାରିବ ।"

ଅତିଥି—"ଈଶ୍ବର ତୁମକୁ ଆଶୀର୍ବାଦ କରନ୍ତୁ । ମୁଁ କାମ ଶିଖିବି । ମୋତେ କ'ଣ କରିବାକୁ ହେବ ବତାଇ ଦେବା ଦରକାର ।"

ସାଇମନ କିଛି ସୂତା ଆଣି ବୁଢ଼ା ଅଙ୍ଗୁଠି ଓ ବଣି ଅଙ୍ଗୁଠି ମଝିରେ ବଳି ମାଇକେଲକୁ କହିଲା, "ଦେଖିଲ, ଏମିତି କରି ପାରିବ ? ଏହା କିଛି କଠିନ କାମ ନୁହେଁ ।"

ସାଇମନ କିପରି ସୂତା ବଳୁଛି, ମାଇକେଲ୍ କିଛି ବେଳ ଯାଏ ଦେଖିଲା । ତା ପରେ କିଛି ସୂତା ଆଣି ନିଜେ ସେହିପରି ବଳିଲା ।

ସାଇମନ ମହଣ ଆଣି ସୂତାରେ ଲଗାଇଲା । ମାଇକେଲ ତାହା କଲା । ଶେଷରେ ମାଇକେଲ୍ ସାଇମନର କାମ ଦେଖି ଦେଖି ଜୋତା ସିଲେଇ ମଧ୍ୟ ଶିଖିଗଲା । ଏସବୁ କାମ ଶିଖିବାକୁ ତାକୁ ବେଶି ସମୟ ଲାଗିଲା ନାହିଁ ।

ମାତ୍ର ତିନିଦିନ ପରେ ଦେଖାଗଲା, ମାଇକେଲ ସବୁ କାମ ଭଲ ଭାବରେ ଶିଖିଯାଇଛି । ଜଣେ ପୁରୁଣା କାରିଗରି ଭଳି ସେ ସବୁ କାମ କରିପାରିଲା । ସେ ସବୁବେଳେ କାମ କରୁଥାଏ । ତାହାର

ସଙ୍ଗେ ଗପ କରେ'ନାହିଁ । କେବଳ ନିତାନ୍ତ ଦରକାର ପଡ଼ିଲେ କଥା କହେ । କାମ ସରିଗଲେ ଯାହା କିଛି ମିଳେ, ତାହା ଖାଏ । ସେ କେବେ ହସିବାର କି କାହାକୁ ଥଟ୍ଟା କରିବାର କେହି ଦେଖିନାହିଁ । ପ୍ରଥମେ ଆସିବା ଦିନ ଯାହା ତା ମୁହଁରେ ହସ ଦେଖାଯାଇଥିଲା— ସେତିକି ।

( ଛଅ )

ଏହିପରି ଦିନ ପରେ ଦିନ, ହପ୍ତା ପରେ ହପ୍ତା ଗଲିଲା । ମାଇକେଲ ସାଇମନ ଘରେ ରହି ତାପାଇଁ କାମ କରୁଥାଏ । ଲୋକେ କହନ୍ତି, "ସାଇମନ ମାଇକେଲ ବୋଲି ଯେଉଁ କାରିଗରଟି ରଖିଛି ତାହା ଭଳି ଆଉ କେହି ଭଲ କାମ ଜାଣେ ନାହିଁ । ସେ ଯେଉଁ ଜୋତା ତିଆରି କରିଥିବ, ସେଥିରେ ଅନେକ ଦିନ ଯିବ ।" କ୍ରମେ ସାଇମନର ଗ୍ରାହକ ସଂଖ୍ୟା ବଢ଼ିଲା, ତାର ଆୟ ମଧ୍ୟ ବଢ଼ିଲା ।

ଶୀତ ଋତୁ । ଦିନେ ଖୁବ୍ ଥଣ୍ଡା ପଡ଼ିଥାଏ । ସାଇମନ ଘରେ ବସି ତାର କାମ କରୁଛି, ଏହି ସମୟରେ ତା ଘର ଆଗରେ ଗୋଟିଏ ଘୋଡ଼ାଗାଡ଼ି ଆସି ରହିଲା । ଗାଡ଼ି ଭିତରୁ ଜଣେ ଗୃହର ଡେଇଁପଡ଼ି ଗାଡ଼ିର ଦରଜା ଖୋଲିଦେଲା । ଜଣେ ଭଦ୍ରଲୋକ ଗାଡ଼ି ଭିତରୁ ବାହାରି ଆସିଲେ । ଭଦ୍ରଲୋକଟି ଯେ ଖୁବ୍ ଧନୀ, ତାହା ତାଙ୍କ ଚେହେରା ଓ ପୋଷାକରୁ ଜଣାଯାଉଥିଲା । ଭଦ୍ରଲୋକଙ୍କର ଦେହଟି ଖୁବ୍ ଉଚ୍ଚ ଓ ସେ ପଶମ ପୋଷାକ ପିନ୍ଧିଥିଲେ । ତାଙ୍କୁ ଦେଖି ମେଟ୍ରେନା ଦଉଡ଼ିଆସି ଘରର କବାଟଟି ପୁରା ଖୋଲିଦେଲା । ଭଦ୍ରଲୋକ ନଇଁପଡ଼ି ଘରଭିତରକୁ ପଶିଗଲେ । ଠିଆହେଲା ବେଳକୁ ତାଙ୍କ ମୁଣ୍ଡ ଛାତକୁ ପ୍ରାୟ ଲାଗିଯାଉଥାଏ ।

ସାଇମନ ଏହି ଭଦ୍ରଲୋକଙ୍କୁ ଦେଖି ବିସ୍ମିତ ହୋଇଗଲା । ସାଧାରଣତଃ ତା ପାଖକୁ କାମ କରାଇବାପାଇଁ ଏଭଳି ବଡ଼ ଲୋକ ଆସନ୍ତି ନାହିଁ । ସେ ସମ୍ମାନ ଦେଖାଇ ଭଦ୍ରଲୋକଙ୍କୁ ନମସ୍କାର କଲା । ଲୋକଟିର ପ୍ରକାଣ୍ଡ ବଳିଷ୍ଠ ଦେହ ଓ ଲାଲ୍ ରଙ୍ଗର ମୁହଁ ଦେଖି ସାଇମନ ଓ ମାଇକେଲ୍ ଉଭୟେ ଚମକି ଉଠିଲେ । ଲୋକଟି ସତେ ଅବା ଏ ପୃଥିବୀର ମଣିଷ ନୁହେଁ—ଅନ୍ୟ କେଉଁ ଗ୍ରହରୁ ଖସିପଡ଼ିଛି ।

ଭଦ୍ରଲୋକ ମୁଣ୍ଡରୁ ଟୋପି ଓ ଦେହରୁ ପଶମ ପୋଷାକ ବାହାରକରି ଟେବୁଲ ଉପରେ ରଖିଦେଲେ । ତାପରେ ଚଉକି ଉପରେ ବସିପଡ଼ି ପଚାରିଲେ, "ତୁମ ଭିତରୁ କିଏ ହେଉଛି ବଡ଼ କାରିଗର ?" ସାଇମନ ଟିକିଏ ଆଗେଇ ଯାଇ କହିଲା, "ଆଜ୍ଞା, ମୁଁ ।"

ତାପରେ ଭଦ୍ରଲୋକ ଚାକରକୁ ଡାକି ଗାଡ଼ି ଭିତରୁ ଚମଡ଼ାଟି ଆଣିବାକୁ ହୁକୁମ ଦେଲେ । ଚାକର ଦଉଡ଼ି ଯାଇ ଚମଡ଼ା ପୋଟଳିଟି ଆଣି ଟେବୁଲ ଉପରେ ରଖିଦେଲା ଓ ପୁଣି ତାଙ୍କ ଆଦେଶ ଅନୁସାରେ ପୋଟଳିଟି ଖୋଲି ଚମଡ଼ା ବାହାରକଲା ।

ଭଦ୍ରଲୋକ ଚମଡ଼ା ଦେଖାଇ ସାଇମନକୁ କହିଲେ, "ଏ ଚମଡ଼ାକୁ ଦେଖୁଛ ?"

ସାଇମନ—"ଆଜ୍ଞା ।"

ଭଦ୍ରଲୋକ—"ଏ କିଭଳି ଚମଡ଼ା ଜାଣ ?"

ସାଇମନ ଚମଡ଼ାରେ ହାତମାରି କହିଲା, "ହଁ, ଖୁବ୍ ଭଲ ଚମଡ଼ା ।"

ଭଦ୍ରଲୋକ—"ଭଲ ଚମଡ଼ା ନିଶ୍ଚୟ । ତୁମଭଳି ବୋକା ମୋଟେ ଏପରି ଚମଡ଼ା ଜୀବନରେ ଦେଖି ନଥିବେ । ଜାଣ, ଏ ଚମଡ଼ା ଜୋଡ଼ିଏ ରୁବେଲ୍ ଦାମ୍‌ରେ ଜର୍ମାନରୁ ଅଣାଇଛି ।"

ସାଇମନ୍‌ର ମନରେ ଭୟ ହୋଇଯାଇଥିଲା । ସେ କହିପକାଇଲା, "ସତକଥା ଆଜ୍ଞା, ଏଭଳି ଚମଡ଼ା ଆମେ ଏଠି କାହିଁ ଦେଖିବାକୁ ପାଉନୁ ?"

ଭଦ୍ରଲୋକ—"ସେ କଥା ସତ । ଏଠି ସେଭଳି ଚମଡ଼ା ଆଦୌ ମିଳେ ନାହିଁ । ଏବେ କହ, ଏଥିରେ ମୋ ପାଇଁ ହଳେ ବୁଟ୍ ତିଆରି କରି ଦେଇପାରିବ ?"

ସାଇମନ—"ହଜୁର, କରିପାରିବି ।"

ଭଦ୍ରଲୋକ ବଡ଼ପାଟିରେ କହିଲେ, "ପାରିବ ? କଅଣ କହୁଛ, ପାରିବ ତ ? କିନ୍ତୁ ମନେରଖିଥାଅ, କାହାପାଇଁ ବୁଟ୍ ତିଆରି କରୁଛ । ଚମଡ଼ାଟା କେଡ଼େ ସରସ । ଏମିତି ତିଆରି କରିବ ଯେମିତି ପୂରା ବରଷଟିଏ ମରାମତି ଦରକାର ହେବନାହିଁ । ବୁଟ୍‌ର ଆକାର ବଦଳିବ ନାହିଁ କି ସିଲେଇ କୌଣସିଠାରେ ଫିଟିଯିବ ନାହିଁ । ଯଦି କରିପାରିବ, ତେବେ ଚମଡ଼ା ନେଇ କାଟ; ଯଦି ନ ପାରିବ ସଫା କହିଦିଅ । ମନେରଖିଥାଅ, ଯେବେ ବର୍ଷକ ଭିତରେ ବୁଟ୍‌ର ଆକାର ଖରାପ ହୋଇଯାଏ କି ସିଲେଇ ଢିଲା ହୋଇ-ଯାଏ, ତୁମକୁ ନେଇ ଜେଲଖାନାରେ ଭର୍ତ୍ତି କରିଦେବି । ମାତ୍ର ଭଲକାମ ଦେଖିଲେ ଦଶ ରୁବେଲ ମଜୁରି ଦେବି ।"

ଭଦ୍ରଲୋକଙ୍କ କଥା ଶୁଣି ସାଇମନର ଭୟ ହୋଇଯାଇଥିଲା । ସେ କଅଣ କହିବ ସ୍ଥିର କରି ନ ପାରି ମାଇକେଲଅଡ଼କୁ ଚାହିଁଲା । ତା କାନ୍ଧରେ ହାତ ମାରି କାନ ପାଖରେ ଧୀରେ କହିଲା, "କଅଣ, କାମଟା ନେବା ?" ମାଇକେଲ ସେହିପରି ଧୀର ସ୍ୱରରେ ହଁ ଭରିଲା ।

ମାଇକେଲର ପରାମର୍ଶରେ ସାଇମନ କାମଟି ହାତକୁ ନେଇ ଜବାବ୍ ଦେଲା ଯେ ବର୍ଷକ ଭିତରେ ବୁଟ୍‌ର ଆକାର ଖରାପ ହେବ ନାହିଁ କି କୌଣସିଠାରେ ସିଲେଇ ଫୁଟିଯିବ ନାହିଁ ।

ଭଦ୍ରଲୋକଙ୍କ ଆଦେଶରେ ଚାକରଟି ଆସି ତାଙ୍କ ବାମ ପାଦର ବୁଟ୍ ବାହାର କରିଦେଲା । ତହୁଁ ସେ ଗୋଡ଼ଟି ମେଲାଇ କହିଲେ, "ଏବେ ମୋ ପାଦର ମାପ ନିଅ ।"

ସାଇମନ ଖଣ୍ଡିଏ ଖୁବ୍ ବଡ଼ କାଗଜ ନେଇ ବସିପଡ଼ି ତାହାଙ୍କ ପାଦର ମାପ ନେଲା । ପାଦର ଲମ୍ବ, ଓସାର, ପାଦ ଅଙ୍ଗୁଳି, ବଳାଗଣ୍ଠି ପ୍ରଭୃତି ସବୁ ଅଂଶର ମାପ ନେଲା ।

ଭଦ୍ରଲୋକ ପୁଣି ସାବଧାନ କରାଇ କହିଲେ, "ଦେଖ, ବୁଟ୍ ପିନ୍ଧିଲେ ଯେପରି ଗୋଡ଼କୁ କଷ୍ଟ ନ ହୁଏ ।" ଏହି ସମୟରେ ତାଙ୍କର ଦୃଷ୍ଟି ପଡ଼ିଲା ମାଇକେଲ ଉପରେ । ସେ ପଚାରିଲେ, "ଏ ଲୋକଟି କିଏ ?" ସାଇମନ ବିନୀତ ଭାବରେ ଉତ୍ତର କଲା, "ସେ ମୋର କାରିଗର । ମୋତେ କାମରେ ସାହାଯ୍ୟ କରେ । ସେ ମଧ୍ୟ ଏହି ବୁଟ୍ ସିଲେଇ କରିବ । ତାକୁ କାମ ଭଲରୂପେ ଜଣାଅଛି ।"

ତହୁଁ ଭଦ୍ରଲୋକ ମାଇକେଲକୁ କହିଲେ, "ଖୁବ୍ ସାବଧାନରେ କାମ କରିବ । ମନେରଖିଥାଅ, ବର୍ଷକ ଭିତରେ କୋଉଠା ଯେପରି ଆଦୌ ଖରାପ ନହୁଏ ।" ମାଇକେଲ କଅଣ କହିବ ତାହା ଜାଣିବାପାଇଁ ସାଇମନ ତା ଆଡ଼କୁ ଚାହିଁଲା; ଦେଖିଲା ମାଇକେଲର ଦୃଷ୍ଟି ଭଦ୍ରଲୋକଙ୍କ ଆଡ଼େ ନାହିଁ । ସେ ଚାହିଁରହିଥିଲା ଭଦ୍ରଲୋକଙ୍କ ପଛପଟେ ଘରର ଗୋଟାଏ କୋଣକୁ—

ସତେ ଯେପରିକି ସେ ସେଠାରେ କାହାରିକୁ ଦେଖୁଥିଲା । କିନ୍ତୁ ସମସ୍ତ ସେହିପରି ଗୁହିଁ ରହି ମାଇକେଲ ଟିକିଏ ହସିଦେଲା । ତାର ମୁହଁ ଉଜ୍ଜ୍ୱଳ ଦେଖାଗଲା ।

ଭଦ୍ରଲୋକ ମାଇକେଲଠାରୁ କୌଣସି ଉତ୍ତର ନ ପାଇ ମନେମନେ ବିରକ୍ତ ହେଉଥିଲେ । ଏବେ ତାର ହସ ଦେଖି ରାଗି-ଯାଇ କହିଲେ, "ଅରେ ବୋକା, ହସୁଛୁ କାହିଁକି ? ମନେରଖି-ଥାଅ, ମୋର ଦରକାର ବେଳକୁ ଜୋତା ତିଆରି କରିସାରିଥିବୁ ।" ମାଇକେଲ ଏଥର କହିଲା, "ଆପଣଙ୍କ ଦରକାର ବେଳକୁ ନିଶ୍ଚୟ ହୋଇଥିବ ।"

ଭଦ୍ରଲୋକ ଶେଷଥର ପାଇଁ ସାବଧାନ କରାଇଦେଇ ନିଜର ବୁଟ୍ ଓ କୋଟ୍ ପିନ୍ଧି ଯିବାକୁ ବାହାରିଲେ । କିନ୍ତୁ ଦ୍ୱାର ପାଖରେ ଯିବା ବେଳକୁ ନଇଁ କରି ଯିବାପାଇଁ ତାଙ୍କର ମନେ ରହିଲା ନାହିଁ । ତାଙ୍କର ମୁଣ୍ଡଟା ଦୁଆରବନ୍ଧରେ ଜୋର୍‌ରେ ପିଟିହୋଇ-ଗଲା । ରାଗରେ ଗରଗର ହୋଇ ସେ ଗୁଡ଼ାଏ ଗାଳିଦେଇ ମୁଣ୍ଡକୁ ଆଉଁସି ଆଉଁସି ଗାଡ଼ି ଭିତରକୁ ଗ୍ଲିଗଲେ । ଗାଡ଼ି ଗ୍ଲିଗଲା ।

( ସାତ )

ସାଇମନ ମାଇକେଲକୁ କହିଲା, "କାମଟା ନେଲେ ସତ; ମାତ୍ର ଖୁବ୍ ସାବଧାନରେ କାମ କରିବ; ଯେପରି ବିପଦରେ ପଡ଼ିବାକୁ ନ ହୁଏ । ଦାମିକା ଚମଡ଼ା; କାମ ଖରାପ ହେଲେ ଭଦ୍ରଲୋକ ବିରକ୍ତ ହେବେ । ତୁମେ ମୋଠାରୁ ଭଲ ଦେଖିପାରୁଛ; ମୋଠାରୁ ଶୀଘ୍ର କାମ କରିପାରିବ । ଏଇ ମାପ ନେଇ ବୁଟ୍ ପାଇଁ ଚମଡ଼ା କାଟ । ସିଲେଇ କାମଟା ମୁଁ କରିବି ।"

ମାଇକେଲ ଚମଡ଼ାଟା ନେଇ ଟେବୁଲ୍ ଉପରେ ପକାଇଲା ଓ ଦୁଇ ଭାଗ କରି ଛୁରୀ ନେଇ କାଟିବସିଲା । ଏଥି ମଧ୍ୟରେ ମେଟ୍ରେନା ସେଠାକୁ ଆସି ମାଇକେଲର କାମ ଦେଖୁଥାଏ । ସେ ଦେଖି ଦେଖି କପ୍ରକାର ଜୋତା ପାଇଁ ଚମଡ଼ା କପରି କଟାହୁଏ ତାହା ଜାଣି ଯାଇଥିଲା । ମାଇକେଲର ଚମଡ଼ା କାଟିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । ମାଇକେଲ ବୁଟ୍ ପାଇଁ ଚମଡ଼ା ନ କାଟି ଚଟିଜୋତା ପାଇଁ କାଟୁଥିଲା । ସେ ଏଇକଥା କହିବାକୁ ବାହାରିଥିଲା କିନ୍ତୁ ସେ ଭାବିଲା, "ନାଁ, ମାଇକେଲ ଭୁଲ କରି ନ ପାରେ । ସେ ଭଲରୂପେ କାମ ଜାଣେ । ହୁଏତ ଭଦ୍ରଲୋକଙ୍କ ବୁଟ୍ ଅନ୍ୟ ପ୍ରକାରରେ ହେଉଥିବ । ମୋର ଧାରଣା ଭୁଲ ହୋଇପାରେ ।" ଏହିପରି ଭାବି ସେ ଚୁପ୍ ହୋଇ ରହିଲା ।

ଚମଡ଼ା କାଟି ସାରି ମାଇକେଲ ସିଲେଇ କରିବାକୁ ବସିଲା । ପୁଣି ସେ ଚଟିଜୋତା ପରି ସିଲେଇ କଲା । ଏହା ଦେଖି ମେଟ୍ରେନା ଅଧିକ ବିସ୍ମିତ ହେଲା; କିନ୍ତୁ କିଛି କହିବାକୁ ସାହସ କଲା ନାହିଁ । ଏକ ଧ୍ୟାନରେ ମାଇକେଲ ସିଲେଇ କରୁଥାଏ । ଦ୍ୱିପହର ବେଳକୁ ସାଇମନ ଖାଇବାକୁ ଯିବ ବୋଲି କାମ ବନ୍ଦ କରି ଠିଆ ହେଲା । ସେ ମାଇକେଲ ଆଡ଼କୁ ଅନାଇଁ ଦେଖିଲା, ସେ ଭଦ୍ରଲୋକଙ୍କ ପାଇଁ ବୁଟ୍ ତିଆରି ନ କରି ଯୋଡ଼ିଏ ଚଟି ଜୋତା କରୁଛି । କାମ ପ୍ରାୟ ସରିବା ଉପରେ ।

ଏହା ଦେଖି ସାଇମନ ମନଦୁଃଖରେ ଭାବିଲା, "ହାୟ ! ହେଲା କଅଣ ? ମାଇକେଲ ମୋ ପାଖରେ ବର୍ଷେ ହେଲା କାମ କରୁଛି; ଏପରି ଭୀଷଣ ଭୁଲ କରିବାର କେବେ ଦେଖା ନାହିଁ । ଭଦ୍ରଲୋକ ବୁଟ୍ ପାଇଁ ବରାଦ ଦେଇଗଲେ; ଆଉ ମାଇକେଲ

ଚିଅର୍ କରୁଛୁ ଚଟି କୋତା । ଭଦ୍ରଲୋକଙ୍କର ଚମଡ଼ାତକ ନଷ୍ଟ ହେଲା । ଏବେ ଉପାୟ କଅଣ ? ଏଭଳି ଚମଡ଼ା ଏଠି ମିଳିବ ନାହିଁ । ମୁଁ ଭଦ୍ରଲୋକଙ୍କୁ କହିବ କଅଣ ?" ତାପରେ ମାଇକେଲକୁ ଡାକି ସେ କହିଲା, "ଭାଇ, ଏ କଅଣ କରୁଛ ? ତୁମେ ମୋର ସର୍ବନାଶ କଲ । ତୁମେ ତ ଜାଣ, ଭଦ୍ରଲୋକ ବୁଟ୍ କୋତା ପାଇଁ ବହିଦ ଦେଇ ଗଲେ; ମାତ୍ର ତୁମେ କଅଣ କରଛ ?"

ଠିକ୍ ଏହି ସମୟରେ ଜଣେ ଲୋକ ଆସି କବାଟରେ ଠକ୍ ଠକ୍ କଲା । ଦୁହେଁ ଯାକ ଝରକାବାଟେ ଚାହିଁ ଦେଖିଲେ, ସେହି ଭଦ୍ରଲୋକଙ୍କ ସାଥିରେ ଆସିଥିବା ଚାକରଟି ତାର ଘୋଡ଼ାକୁ ଫାଟକ ପାଖରେ ବାନ୍ଧଦେଇ ଦୁଆରମୁହଁ ଅଡ଼କୁ ଆସୁଛି । ସାଇମନ କବାଟ ଫିଟାଇ ଦେବାରୁ ଚାକରଟି ଘର ଭିତରେ ପ୍ରବେଶ କରି କହିଲା, "ସାଆନ୍ତାଣୀ ମୋତେ ସେହି ବୁଟ୍ ବିଷୟରେ ପଠାଇଛନ୍ତି ।"

ସାଇମନ—"ବୁଟ୍ ବିଷୟରେ କଅଣ କହିଛନ୍ତି ?"

ଚାକର—"ମୋ ସାଆନ୍ତଙ୍କର ମୃତ୍ୟୁ ହୋଇଯାଇଛି । ତେଣୁ ତାଙ୍କ ପାଇଁ ଆଉ ବୁଟ୍ ଦରକାର ନାହିଁ ।"

ସାଇମନ—"କଅଣ କହିଲ ? ତାଙ୍କର ମୃତ୍ୟୁ ହୋଇଯାଇଛି ?"

ଚାକର—"ହଁ । ସେଦିନ ତୁମ ପାଖରେ ବୁଟ୍‌ର ବରାଦ ଦେଇ ସେ ଗାଡ଼ିରେ ଘରକୁ ଗଲେ । ମାତ୍ର ଗାଡ଼ି ଭିତରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା । ଘରେ ଗାଡ଼ି ପହଞ୍ଚିବାରୁ ଏକଥା ଜଣାଗଲା । ଗାଡ଼ିର ଦ୍ୱାର ଖୋଲିବାରେ ଦେଖାଗଲା ଯେ ମରି ପଡ଼ିଛନ୍ତି । ସାଆନ୍ତାଣୀ ମୋତେ ପଠାଇ କହିଛନ୍ତି—ଯାଅ, ମୋର

ସ୍ୱାମୀ ଯେଉଁ ବୁଟ୍ ପାଇଁ ବରାଦ ଦେଇଯାଇଥିଲେ, ଆଉ ତାହା ଦରକାର ନାହିଁ । ସେହି ଚମଡ଼ାରେ ଯୋଡ଼ାଏ ଚଟି ଶୀଘ୍ର ତିଆର କରିଦେବ । ଖବର ଦେବାବେଳେ ତାଙ୍କ ଚଟିଜୋତା ପିନ୍ଧାଇ ଦିଆଯିବ । ମୁଁ ଚଟି ଜୋତା କରାଇ ନେଇଯିବାକୁ ସାଆନ୍ତାଣୀ କହୁଛନ୍ତି ।”

ମାଇକେଲ୍ ଆଗରୁ ଚଟିଜୋତା ତିଆରି କରି ରଖିଥିଲା । ସେ ବଳିଥିବା ରେଜା ଚମଡ଼ାକୁ ଗୋଟିଏ ପୋଟଳାରେ ବାନ୍ଧି ଚଟି ଜୋତା ସହିତ ଗୃହକରକୁ ଦେଲା । ଗୃହକରଟି ସାଇମନ ଓ ମାଇକେଲଙ୍କୁ ନମସ୍କାର ଜଣାଇ ବିଦାୟ ନେଲା ।

( ଆଠ )

ଏହା ପରେ ବର୍ଷ ବର୍ଷ ହୋଇ ଛଅ ବର୍ଷ ବିତିଗଲା । ମାଇକେଲ୍ ଓ ସାଇମନ ଏକାଠି ରହି ପରସ୍ପରକୁ କାମରେ ସାହାଯ୍ୟ କରୁଥାନ୍ତି । କିନ୍ତୁ ମାଇକେଲର ଅନ୍ୟ ଲୋକଙ୍କ ସଙ୍ଗରେ ପ୍ରାୟ କିଛି ସମ୍ବନ୍ଧ ନ ଥାଏ । ସେ କାହା ପାଖକୁ ଯାଉ ନଥିଲା କି ନିତାନ୍ତ ଦରକାର ନ ପଡ଼ିଲେ କଥା କହୁ ନ ଥିଲା । ଏତେ ବର୍ଷ ଭିତରେ ସେ ଦୁଇଥର ମାତ୍ର ହସିବାର ଦେଖାଯାଇଥିଲା । ଯେଉଁ ଦିନ ମେଟ୍ରେନା ତାକୁ ଖାଇବାକୁ ଦେଇଥିଲା, ସେଦିନ ସେ ପ୍ରଥମ ଥର ପାଇଁ ହସିଥିଲା । ତାର ଦ୍ୱିତୀୟଥର ହସ ଦେଖା ଯାଇଥିଲା, ଯେଉଁ ଦିନ ସେହି ଭଦ୍ରଲୋକ ବୁଟ୍ ବରାଦ ଦେବାପାଇଁ ସାଇମନର ଘରେ ବସିଥିଲେ । ସେ କେଉଁଠାରୁ ଆସିଥିଲା, ଏକଥା ସାଇମନ କେବେହେଲେ ମାଇକେଲଙ୍କୁ ପଚାରୁ ନ ଥିଲା । ତାର ପ୍ରଧାନ ଭୟ ଥିଲା, କାଳେ ମାଇକେଲ୍ ତାକୁ ଛାଡ଼ି ଚାଲିଯିବ ।

ଧନେ ସମସ୍ତେ ଘରେ ଥାଆନ୍ତି । ମେଟ୍ରେନା ରନ୍ଧାବଢ଼ା କରୁଥାଏ । ପିଲାମାନେ ଘର ଭିତରେ ଡେଇଁ ଖେଳୁଥାନ୍ତି । ସାଇମନ ଗୋଟିଏ ଝରକା ପାଖରେ ବସି ଜୋତା ସିଲେଇ କରୁଥାଏ; ମାଇକେଲ୍ ସେହିପରି ଆଉ ଗୋଟିଏ ଝରକା ପାଖରେ ବସି ଜୋତାକାମ କରୁଥାଏ । ଏହି ସମୟରେ ଗୋଟିଏ ପିଲା ମାଇକେଲ୍ ପାଖକୁ ଦଉଡ଼ି ଯାଇ ତା ପିଠି ଉପରେ ଆଉଜିପଡ଼ିଲା । ଝରକାବାଟେ ବାହାରକୁ ଚାହିଁ ସେ ମାଇକେଲ୍‌କୁ କହିଲା, "ଦାଦା, ଦାଦା, ଦେଖିଲ ଗୋଟିଏ ସ୍ତ୍ରୀଲୋକ ଦୁଇଟି ଝିଅଙ୍କୁ ସାଙ୍ଗରେ ନେଇ ଆମ ଘରଆଡ଼କୁ ଆସୁଛି । ଦେଖିଲ, ଗୋଟିଏ ଝିଅ ହେଉଛି ଛୋଟା ।"

ଏହା ଶୁଣିଲା ମାତ୍ରେ ମାଇକେଲ୍ କାମ ବନ୍ଦ କରିଦେଇ ଝରକାବାଟେ ରାସ୍ତା ଉପରକୁ ଚାହିଁଲା ।

ସାଧାରଣତଃ ମାଇକେଲ୍ କେବେ ରାସ୍ତାଆଡ଼କୁ ଅନାଏ ନାହିଁ । କିନ୍ତୁ ସେ ଝରକାରୁ ମୁଣ୍ଡ ବାହାର କରି ଏକ ଦୃଷ୍ଟିରେ ରାସ୍ତାକୁ ଚାହିଁ ରହିଲା । ଏହା ଦେଖି ସାଇମନ ଆଶ୍ଚର୍ଯ୍ୟ ହୋଇଗଲା । ମାଇକେଲ୍‌ର ଏ ପରିବର୍ତ୍ତନ କାହିଁକି ? ସାଇମନ ମଧ୍ୟ ରାସ୍ତା ଆଡ଼କୁ ଚାହିଁଲା । ଜଣେ ଭଦ୍ରମହିଳା ଦୁଇଟି ଛୋଟ ଝିଅଙ୍କର ହାତ ଧରି ଆସୁଥିବାର ସେ ଦେଖିପାରିଲା । ମହିଳାଙ୍କ ଦେହରେ ପଶମର କୁର୍ତ୍ତା ଓ ସୁନ୍ଦର ପୋଷାକ । ଝିଅ ଦୁଇଟି ଦେଖିବାକୁ ଠିକ୍ ଏକାପରି—ପ୍ରଭେଦ ଏତିକି ଯେ ଦୁହିଁଙ୍କ ଭିତରୁ ଜଣେ ଛୋଟେଇ ଛୋଟେଇ ଚାଲୁଛି । ସାଇମନ ଦେଖିପାରିଲା, ପିଲାଟିର ବାମ ଗୋଡ଼ଟି ଛୋଟ ।

ମହାଳା ପ୍ରଥମେ ଝିଅ ଦୁଇଟିକୁ ସାଇମନର ଘରକୁ ଆଗେଇ ଦେଇ ନିଜେ ସେମାନଙ୍କ ପଛରେ ଘରେ ପ୍ରବେଶ କଲେ । ସେ ନମସ୍କାର କରିବାରୁ ସାଇମନ ମଧ୍ୟ ନମସ୍କାର ଜଣାଇ ପଚାରିଲା, "ଆପଣଙ୍କ ପାଇଁ ଆମେ କଅଣ କରିପାରିବୁ ?" ମହାଳା ଜଣକ ଟେବୁଲ୍ ପାଖରେ ବସିଲେ । ଝିଅ ଦୁଇଟି ଅଚିହ୍ନା ଲୋକଙ୍କୁ ଦେଖି ଟିକିଏ ଭୟ କରୁଥାନ୍ତି । ଦୁହେଁ ଯାକ ମହାଳାଙ୍କ ଦେହକୁ ଲାଗି ଛିଡ଼ାହୋଇଥାନ୍ତି ।

ମହାଳା କହିଲେ, "ଏଇ ଝିଅ ଦୁଇଟିଙ୍କ ପାଇଁ ଦୁଇ ଯୋଡ଼ା ଚମଡ଼ା ଜୋତା ଦରକାର ।"

ସାଇମନ ଉତ୍ତର କଲା, "ହଁ, କରିଦେବି । ପିଲା-ଦୁଇଟିଙ୍କର ପାଦ ଖୁବ୍ ଛୋଟ । ଏତେ ଛୋଟ ଜୋତା ଆମେ କେବେ କରିନାହୁଁ । କିନ୍ତୁ ମୋ ପାଖରେ ଯେଉଁ ମାଇକେଲ୍ କାମ କରୁଛି ସେ ଜଣେ ବିଚକ୍ଷଣ କାରିଗର । ଯେଉଁ ଫେଶନରେ ଯେତେ ଜୋତା କରିବାକୁ କହିବେ, ସେ କରି ଦେଇ ପାରିବ ।"

ଏହା କହି ସାଇମନ ମାଇକେଲ୍ ଆଡ଼କୁ ଚାହିଁଲା ସେତେବେଳକୁ ମାଇକେଲ୍ କାମ ଛାଡ଼ିଦେଇ ଏକ ଦୃଷ୍ଟିରେ ଝିଅ ଦୁଇଟିଙ୍କୁ ଚାହିଁ ରହିଥିଲା । ସାଇମନ ଏଥିରେ ବିସ୍ମିତ ହୋଇଗଲା । ଅବଶ୍ୟ ଝିଅ ଦୁଇଟି ଦେଖିବାକୁ ଖୁବ୍ ସୁନ୍ଦରୀ, କିନ୍ତୁ ମାଇକେଲ୍ ସେମାନଙ୍କୁ ଏପରି ଚାହିଁବାର କାରଣ କଅଣ ହୋଇ ପାରେ ? ମାଇକେଲ୍ ସେମାନଙ୍କୁ ଆଗରୁ ଚିହ୍ନିଥିଲା ପରି ବୋଧ ହେଉଥିଲା । ସାଇମନ ମହାଳାଙ୍କ ସଙ୍ଗେ ଦରଦାମ ନେଇ

କଥାବାର୍ତ୍ତା ହେଲା । ଦର ସ୍ଥିର ହେବା ପରେ ସାଇମନ ପିଲାଙ୍କ ପାଦର ମାପ ନେବାକୁ ଗଲା । ମହିଳା ଛୋଟ ଝିଅଟିର ପାଦ ଦଉଟି ଦେଖାଇଦେଇ କହିଲେ, "ଏଇ ଝିଅଟିର ଦୁଇଟି ଯାକ ପାଦର ମାପ ନେଲେ ହେବ । ଛୋଟା ଗୋଡ଼ଟି ପାଇଁ ଭିନ୍ନେ ମାପ ଦରକାର । ଆଉ ପାଦର ମାପ ଯାହା ଅନ୍ୟ ଝିଅର ପାଦର ମାପ ଠିକ୍ ସେଇଆ । ତେଣୁ ଉଭୟ ଯୋଡ଼ା ଏକ ମାପର ହେବ । ପିଲା ଦଉଟି ଯାଆଁଳା । ଦୁହିଁଙ୍କର ମାପ ସମାନ ।"

ସାଇମନ ପିଲାଟିର ପାଦର ମାପ ନେଇ ପଚାରିଲା, "ଏ ଝିଅର ବାଁ ପାଦଟି କିପରି ବଙ୍କା ହୋଇଗଲା ? କଅଣ ଜନ୍ମରୁ ଏଇପରି ? କେଡ଼େ ସୁନ୍ଦର ଝିଅଟିଏ !"

ମହିଳା କହିଲେ, "ଜନ୍ମରୁ ତାର ଗୋଡ଼ ଏପରି ନଥିଲା । ତାର ମାଆ ତା ଗୋଡ଼ ଉପରେ ପଡ଼ି ଚପି ଦେବାରୁ ଏପରି ବଙ୍କା ହୋଇଯାଇଛି ।"

ଏହି ସମୟରେ ମେଟ୍ରେନା ବାହାରିପଡ଼ି ପଚାରିଲା, "ତାଆ ମାଆଟାର କଣ ଆଖି ନଥିଲା ? ଏ ପିଲା ଦଉଟି ତେବେ ଆପଣଙ୍କର ନୁହନ୍ତି ? ଏମାନେ କାହା ପିଲା ?"

ମହିଳା ଉତ୍ତର କଲେ, "ମୁଁ ପିଲା ଦଉଟିଙ୍କର ମାଆ ନୁହେଁ; ଏପରିକି ମୁଁ ସେମାନଙ୍କର କୁଟୁମ୍ବର ମଧ୍ୟ କେହି ନୁହେଁ । ପିଲାଦଉଟି ମୋର ଅଜଣା ଅଶୁଣା ଥିଲେହେଁ ମୁଁ ସେମାନଙ୍କୁ ପାଳିଅଛି ।"

ମେଟ୍ରେନା କହିଲା, "ପିଲା ଦଉଟି ଆପଣଙ୍କର ନ ହେଲେ ସୁଦ୍ଧା ଆପଣ ମାଆଠାରୁ ବଳି ସେମାନଙ୍କୁ ଆଦର କରୁଛନ୍ତି ।"

ମହିଳା କହିଲେ, "ଆଦର ନ କରି ରହନ୍ତି କିପରି ? ଟିକିଛୁଆବେଳୁ ମୁଁ ଦୁହିଁଙ୍କୁ ଖୁଆଇ ପିଆଇ ପାଳିଆସିଛି । ମୋର ନିଜର ଗୋଟିଏ ପିଲା ଥିଲା, କିନ୍ତୁ ଭଗବାନ ତାକୁ ମୋଠାରୁ ଛଡ଼ାଇନେଲେ । ଏବେ ମୁଁ ଏ ପିଲା ଦିଓଟିଙ୍କୁ ନିଜ ପିଲାଠାରୁ ବଳି ସ୍ନେହ କରୁଛି ।"

ମେଟ୍ରେନା ପୁଣି ପଚାରିଲା, "ତେବେ କହନ୍ତୁ, ଏ ପିଲାଙ୍କ ପ୍ରକୃତ ବାପ ମାଆ କିଏ ?"

## ( ନଅ )

ମହିଳା ପିଲା ଦିଓଟିଙ୍କର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରି କହିଲେ—

"ଛଅବର୍ଷ ତଳେ ଏକ ସପ୍ତାହ ଭିତରେ ପିଲା ଦିଓଟିଙ୍କର ବାପ ମାଆ ମରିଗଲେ । ମଙ୍ଗଳବାର ଦିନ ବାପକୁ କବର ଦିଆଗଲା; ତିନିଦିନ ପରେ ଶୁକ୍ରବାର ଦିନ ମାଆ ମଲା । ବାପ ମରିବାର ତିନିଦିନ ପରେ ପିଲା ଦିଓଟିଙ୍କର ଜନ୍ମ । ପିଲା ଦିଓଟିଙ୍କୁ ଜନ୍ମଦେଇ ମାଆ ଦିନଟିଏ ସୁଦ୍ଧା ବଞ୍ଚିନଥିଲା । ମୁଁ ଓ ମୋର ସ୍ୱାମୀ ସେତେବେଳେ ଗାଆଁରେ ଥିଲୁ । ଗୃହବାସ କରି ଦୁଃଖେ ସୁଖେ ଚଳୁଥିଲୁ । ପିଲା ଦିଓଟିର ବାପା ମାଆଙ୍କ ଘର ଆମ ଘର ପାଖରେ । ବାପ ଜଙ୍ଗଲରୁ କାଠ କାଟି ସହରରେ ବିକି ଚଳୁଥିଲା । ଦିନେ କାଠ ହାଣିଲାବେଳେ ଗୋଟାଏ ବଡ଼ ଡାଳ ତା ଉପରେ ପଡ଼ିଯିବାରୁ ସେ ଖଣ୍ଡିଆଖାବରା ହୋଇ ତଳେ ପଡ଼ିଥିଲା । ଲୋକେ ତାକୁ ଟେକାଟେକ କରି ଘେନି ଆସିଲେ । ମାତ୍ର ଭଗବାନଙ୍କର ଇଚ୍ଛା ଯାହା ଥିଲା, ତାହାହିଁ ହେଲା । ସେଇଦିନ ତାର ମୃତ୍ୟୁ ହେଲା । ସେହି ସପ୍ତାହରେ ପିଲା ଦିଓଟି

ଜନ୍ମ ହେଲେ । ମାଆ ସହଜେ ଅତି ଗରିବ, ପୁଣି ଏକୁଟିଆ । ପିଲା ଜନ୍ମବେଳେ ମାଆ ପାଖରେ କେହି ନଥିଲେ । ସେ ମେଉଁ-ବେଳେ ମଲା ତା ମଧ୍ୟ କେହି ଜାଣନ୍ତି ନାହିଁ ।

"ତା ଅରଦିନ ସକାଳେ ମୁଁ ସେ ଘରକୁ ଦେଖିବାକୁ ଗଲି । ଘରେ ପଶି ଦେଖେଁ, ପିଲା ଦିଓଟି ବଞ୍ଚିଛନ୍ତି । ମାଆ ଯେଉଁବେଳେ ଗଡ଼ି ଗଡ଼ି ଏଇ ପିଲାଟିର ବାଁ ଗୋଡ଼ ଉପରେ ପଡ଼ିଛି । ତା ଦେହରେ ଜୀବନ ନାହିଁ । ଗ୍ରାମବାସୀମାନେ ମାଆକୁ କବର ଦେବାକୁ ନେଇଗଲେ । ପିଲା ଦୁଇଟିଙ୍କ ପାଇଁ କଅଣ କରାଯିବ ଏହି ବିଚାର ପଡ଼ିଲା । ସେତେବେଳକୁ ମୋ ନିଜ ପିଲାଟିକୁ ଅଢ଼େଇମାସ ହୋଇଥାଏ । ପିଲା ଯୋଡ଼ିଙ୍କର ଅବସ୍ଥା ଦେଖି ମୋର ଦୟା ହେଲା । ଅନ୍ତତଃ କିଛି ଦିନ ପାଳିବାକୁ ରାଜିହୋଇ ମୁଁ ସେ ଦୁହିଁଙ୍କୁ ନିଜ ଘରକୁ ନେଇଆସିଲି । କିଛି ଦିନ ପରେ ଗ୍ରାମବାସୀମାନେ ସଭା କରି ଏହି ପିଲାଙ୍କ ବିଷୟରେ ବିଚାର କଲେ । ଶେଷରେ କେତେଜଣ ମୁଖିଆ ଲୋକ ମୋ ପାଖକୁ ଆସି କହିଲେ, 'ତୁମେ କେତେଦିନ ହେଲା ପିଲା ଦିଓଟିଙ୍କୁ ରଖିଛ । ଆହୁରି କିଛିଦିନ ରଖିଥାଅ । ପରେ ଆମେ ସେମାନଙ୍କ ପାଇଁ କିଛି ବ୍ୟବସ୍ଥା କରିବୁ ।'

"ମୋ ଉପରେ ପିଲା ଦିଓଟିଙ୍କର ଭାର ପଡ଼ିଲା । ଛୋଟୀ ପିଲାଟି ବଞ୍ଚିବ ବୋଲି ମୋର ଆଶା ନଥିଲା । ତେଣୁ ପ୍ରଥମେ ପ୍ରଥମେ ମୁଁ ତାର ବେଶି ଯତ୍ନ ନେଉ ନଥିଲି । ପରେ ମୁଁ ଭାବିଲି, 'ସେ ବଞ୍ଚିବ କି ନା, ସେକଥା ଚିନ୍ତା କରି ତାର ଯତ୍ନ ନ ନେବି କାହିଁକି ?' ମୋ ନିଜ ପିଲାର ଯେତିକି ଯତ୍ନ ନେଉଥିଲି, ଏ ଝିଅ ଦିଓଟିଙ୍କର ମଧ୍ୟ ସେତିକି ଯତ୍ନ ନେଲି । ତିନିଙ୍କୁ ସମାନ ଦୃଷ୍ଟିରେ ଦେଖିଲି । କିନ୍ତୁ ଭଗବାନଙ୍କର ବିଚିତ୍ର ବିଚାର । ମୋ ନିଜ ପିଲାଟିକୁ ଦୁଇବର୍ଷ

ନ ପୂଚ୍ଛଣୁ ସେ ସ୍ୱର୍ଗକୁ ଚାଲିଗଲେ । ମୋର ସ୍ୱାମୀ ଏବେ ଗୋଟିଏ କଳରେ କାମ କରୁଛନ୍ତି । ଭଲ ଦରମା ମିଳେ । ଆମେ ବେଶ୍ ସୁଖରେ ଚଳୁଛୁ । ମୋର ନିଜର ଅନ୍ୟ ପିଲା ନାହାନ୍ତି । ଏ ଦୁଇଟି ନଥିଲେ ମୋ ଜୀବନ କେଡ଼େ ଦୁଃଖର ହୋଇଥାନ୍ତା ଅନୁମାନ କରିପାରୁଥିବ । ଏପରି ସ୍ଥଳରେ ସେମାନଙ୍କୁ ମୁଁ ସ୍ନେହ ନକରି ରହିବି କିପରି ? ଏଇ ଦୁଇଟି ହେଉଛନ୍ତି ମୋର ସର୍ବସ୍ୱ ।"

ଏଇକଥା କହୁ କହୁ ମହିଳାଙ୍କ ଆଖିରେ ଲୁହ ଛଳ ଛଳ ହୋଇଆସିଲା । ମେଟ୍ରେନା କହିଲା, "ଲୋକେ କହନ୍ତି 'ବାପ ମାଆ ନଥାଇ ପିଲା ବଞ୍ଚିପାରେ, ମାତ୍ର ଈଶ୍ୱରଙ୍କ ଦୟା ବିନା ସେ ବଞ୍ଚିନପାରେ ।' ଏ କଥାଟା ଖୁବ୍ ସତ ।"

ଏହି ସମୟରେ ଦେଖାଗଲା, ମାଇକେଲ୍ ଦେହରୁ ଗୋଟାଏ ଜ୍ୟୋତି ବାହାରୁଛି । ସେହି ଜ୍ୟୋତିରେ ସମଗ୍ର ଘର ଭିତରଟା ଉଜ୍ଜ୍ୱଳ ହୋଇଗଲା । ସମସ୍ତେ ତା ଆଡ଼କୁ ଚାହିଁଲେ । ସେତେବେଳକୁ ମାଇକେଲ୍ ହାତ ଯୋଡ଼ି ସେଇଠାରେ ବସିଥାଏ; ତାର ମୁହଁ ଉପରକୁ ଓ ସେଥିରେ ମଧୁର ହସ ।

( ଦଶ )

ମହିଳା ଝିଅ ଦୁଇଟିଙ୍କୁ ସଙ୍ଗରେ ଧରି ବିଦାୟ ନେଇଗଲେ । ମାଇକେଲ୍ ତାର ହତିଆରପତ୍ର ତଳେ ରଖିଦେଇ ଉଠିଲା । ସାଇମନ ଓ ମେଟ୍ରେନା ଦୁହିଁଙ୍କୁ ପ୍ରଣିପାତ କରି ସେ କହିଲା, "ଆପଣମାନେ ମୋତେ ଏବେ ବିଦାୟ ଦିଅନ୍ତୁ । ଭଗବାନ ମୋତେ କ୍ଷମା କରିଛନ୍ତି । କିଛି ଦୋଷ କରିଥିଲେ, ଆପଣମାନେ ମୋତେ କ୍ଷମା ଦିଅନ୍ତୁ ।"

ମାଇକେଲର ଦେହରୁ ଗୋଟାଏ ଉଜ୍ଜ୍ୱଳ ଜ୍ୟୋତି ବାହାରୁଥାଏ । ସାଇମନ ଉଠିପଡ଼ି ମାଇକେଲକୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲା, "ଆପଣ ସାଧାରଣ ମନୁଷ୍ୟ ନୁହନ୍ତି । ମୁଁ ଆପଣଙ୍କୁ ଏଠାରେ ଅଟକାଇ ରଖିପାରିବି ନାହିଁ କିମ୍ବା କୌଣସି ପ୍ରଶ୍ନ ପଚାରିବି ନାହିଁ । କିନ୍ତୁ ମୁଁ ଗୋଟିଏ କଥା ଜାଣିବାକୁ ଚାହେଁ । ଯେଉଁଦିନ ମୁଁ ଆପଣଙ୍କୁ ଗୀର୍ଜା ପାଖରେ ଦେଖି ଘରକୁ ଆଣିଲି, ସେଦିନ ଆପଣ ନିତାନ୍ତ ବିଷଣ୍ଣ ଥିଲେ । କିନ୍ତୁ ଯେତେବେଳେ ମୋର ସ୍ତ୍ରୀ ଆପଣଙ୍କୁ ଖାଇବାକୁ ଆଣିଦେଲା, ସେତେବେଳେ ଆପଣଙ୍କ ମୁହଁ ପ୍ରସନ୍ନ ଦେଖାଗଲା । ଆପଣ ହସିଲେ ଓ ଆପଣଙ୍କ ଦେହରୁ ଗୋଟାଏ ଜ୍ୟୋତି ବାହାରିଲା । ଆଉ ଥରେ ଯେତେବେଳେ ସେହି ଭଦ୍ରଲୋକ ବୁଟ୍‌ଯୋତା ପାଇଁ ବରାଦ ଦେବାକୁ ଆସିଥିଲେ, ସେତେବେଳେ ଆପଣଙ୍କ ଦେହରୁ ସେହିପରି ଜ୍ୟୋତି ବାହାରି ଥିଲା । ଏଇ ଅଳ୍ପ ସମୟ ପୂର୍ବେ ମହିଳାଟି ପିଲାଦୁଇଟିଙ୍କୁ ନେଇ ଯୋତାର ମାପ ଦେଉଥିଲା ବେଳେ ପୁଣି ଆପଣ ତୃତୀୟ ଥର ହସିଲେ ଓ ଆପଣଙ୍କ ଦେହରୁ ଠିକ୍ ସେହିପରି ଜ୍ୟୋତି ବାହାରୁଥିଲା । ଯଦି ମୋଠାରେ ଦୟା ଥାଏ, ମୋତେ ଏହି ହସିବାର ଓ ଏପରି ଜ୍ୟୋତି ବାହାରିବାର କାରଣ କହନ୍ତୁ ।"

ମାଇକେଲ ଉତ୍ତର କଲେ, "ଈଶ୍ୱର ମୋତେ ଦଣ୍ଡ ଦେଇଥିଲେ, ଏବେ କ୍ଷମା ଦେଇଅଛନ୍ତି । ସେଥିପାଇଁ ମୋ ଦେହରୁ ଦିବ୍ୟ ଜ୍ୟୋତି ବାହାରୁଥିଲା । ମୁଁ ଏତେ ବର୍ଷ ଭିତରେ ତିନିଥର ମାତ୍ର ହସିଛି । ସେଥିର କାରଣ ଏହି ଯେ ଈଶ୍ୱର ମୋତେ ତିନୋଟି ସତ୍ୟ ଶିକ୍ଷା କରିବା ପାଇଁ ପୃଥିବୀକୁ ପଠାଇଥିଲେ । ଏଥି ମଧ୍ୟରେ ମୁଁ ତିନୋଟିଯାକ ସତ୍ୟ ଶିକ୍ଷା କରିସାରିଛି । ଯେତେବେଳେ

ତୁମର ସ୍ତ୍ରୀ ମୋପ୍ରତି ଦୟା ପ୍ରକାଶ କରି ମୋତେ ଖାଇବାକୁ ଦେଲେ ସେତେବେଳେ ମୁଁ ପ୍ରଥମ ସତ୍ୟ ଶିକ୍ଷା କଲି ବୋଲି ହସି-ଥିଲି । ଦ୍ୱିତୀୟ ସତ୍ୟଟି ପାଇଲି ସେ ଭଦ୍ରଲୋକ ବୁଟ୍‌ର ବରାଦ ଦେଉଥିଲା ବେଳେ । ତେଣୁ ସେତେବେଳେ ଦ୍ୱିତୀୟ ଥର ହସି-ଥିଲି । ଆଜ ସେହି ଝିଅ ଦୁଇଟିଙ୍କୁ ଦେଖି ମୁଁ ତୃତୀୟ ବା ଶେଷ ସତ୍ୟଟି ଶିଖିଲି । ତେଣୁ ଆଜ ଶେଷଥର ପାଇଁ ହସିଲି ।"

ସାଇମନ କହିଲା, "ମହାଭାଗ, ଆପଣଙ୍କଠାରୁ ଏତିକି ଜାଣିବାକୁ ଚାହେଁ, ଈଶ୍ୱର ଆପଣଙ୍କୁ କାହିଁକି ଦଣ୍ଡ ଦେଇଥିଲେ ? ଯେଉଁ ତିନୋଟି ସତ୍ୟ ଆପଣ ପାଇଅଛନ୍ତି, ସେ ତିନୋଟି କଅଣ ?"

ମାଇକେଲ ଉତ୍ତର କଲେ, "ମୁଁ ଈଶ୍ୱରଙ୍କ ଆଦେଶ ଅମାନ୍ୟ କରିଥିଲି ବୋଲି ମୋତେ ସେ ଦଣ୍ଡ ଦେଇଥିଲେ । ମୁଁ ହେଉଛି ସ୍ୱର୍ଗର ଜଣେ ଦେବଦୂତ । ଈଶ୍ୱରଙ୍କର ଆଦେଶ ପାଳନ କରିବା ଦେବଦୂତମାନଙ୍କର କର୍ତ୍ତବ୍ୟ । ଥରେ ଜଣେ ସ୍ତ୍ରୀଲୋକର ଆତ୍ମାକୁ ଭଗବାନଙ୍କ ନିକଟକୁ ନେଇଯିବା ପାଇଁ ମୁଁ ଆଦେଶ ପାଇଥିଲି । ମୁଁ ପୃଥିବୀରେ ଓହ୍ଲାଇ ସେ ସ୍ତ୍ରୀଲୋକକୁ ଦେଖିଲି । ପୂର୍ବମୁହୂର୍ତ୍ତରେ ସେ ଦୁଇଟି ଶିଶୁଙ୍କୁ ଜନ୍ମ ଦେଇ ଅତି ବିକଳ ଅବସ୍ଥାରେ ପଡ଼ିଥିଲା । ପିଲାଦୁଇଟି ମାଆ କୋଳରେ ପଡ଼ିଥାନ୍ତି । ସ୍ତ୍ରୀ ଲୋକଟି ମୋତେ ଦେଖିଲାମାତ୍ରେ ମୁଁ ତାର ଆତ୍ମାକୁ ନେଇଯିବାକୁ ଆସିଛି ବୋଲି ସେ ଜାଣିପାରିଲା । ସେ ଅତି କରୁଣ ସ୍ୱରରେ କହିଲା, "ହେ ଦେବ-ଦୂତ, ମୋର ସ୍ୱାମୀ ମାତ୍ର ତିନିଦିନ ହେଲା ମରିଛନ୍ତି । ଗୋଟାଏ ଡାଳ ତାଙ୍କ ଉପରେ ପଡ଼ିବାରୁ ତାଙ୍କର ମୃତ୍ୟୁ ହୋଇଛି । ମୋର ମାଆ, କି ଖୁଡ଼ୀ, କି ମାଉସୀ, କି ଭଉଣୀ କେହି ନାହାନ୍ତି । ମୋତେ ନେଇଗଲେ ପିଲା ଦୁଇଟି ବଞ୍ଚିବେ କିପରି ? ମୁଁ ସେମାନଙ୍କୁ ବଞ୍ଚାଇ

ଟିକିଏ ବଡ଼ କରିଦିଏ, ତାପରେ ମୁଁ ମଲେ କିଛି କ୍ଷତି ନାହିଁ । ବାପ ମାଆ ବିନା କେଉଁଣ ପିଲା ବଞ୍ଚିପାରେ ?"

ସ୍ତ୍ରୀଟିର କଥାରେ ମୋ ମନ ତରଳି ଗଲା । ପିଲା ଦୁଇଟିଙ୍କୁ ସେହି ସ୍ତ୍ରୀର କୋଳରେ ରଖି ମୁଁ ସ୍ୱର୍ଗକୁ ଫେରିଆସିଲି । ମୁଁ ଭଗବାନଙ୍କୁ ଜଣାଇଲି, "ପ୍ରଭୁ, ମୁଁ ସେହି ସ୍ତ୍ରୀଲୋକଟିର ଆତ୍ମାକୁ ଆଣି ନ ପାରି ଫେରିଆସିଲି । ଜଙ୍ଗଲ ତଳେ ଗୋଟାଏ ଗଛ ପଡ଼ିଯିବାରୁ ତାର ସ୍ୱାମୀ ମରିଛି । ସେ ବର୍ତ୍ତମାନ ଦୁଇଟି ଯାଆଁଳା ଝିଅ ପ୍ରସବ କରିଛି । ସେ ପ୍ରାର୍ଥନା କରି କହିଲା, ପିଲା ଦୁଇଟିଙ୍କୁ ଖୁଆଇ ପିଆଇ ଟିକିଏ ବଡ଼ କରିଦେଲା ପରେ ସେ ମଲେ କିଛି ଅସୁବିଧା ହେବ ନାହିଁ । ବାପା ମାଆ ବିନା ପିଲା ବଞ୍ଚି ପାରିବ ନାହିଁ । ସେଥିପାଇଁ ମୁଁ ତାର ଆତ୍ମାକୁ ନ ଆଣି ଫେରିଆସିଲି ।"

ମୋର ଏହି କଥା ଶୁଣି ଭଗବାନ ବିରକ୍ତ ହୋଇ ଆଦେଶ ଦେଲେ, 'ଏଇ ମୁହୂର୍ତ୍ତରେ ଯାଇ ସେ ସ୍ତ୍ରୀର ଆତ୍ମାକୁ ନେଇ ଆସ ଏବଂ ତିନୋଟି ସତ୍ୟ ଶିକ୍ଷା କର । ସେ ତିନୋଟି ସତ୍ୟ ହେଉଛି—(୧) ମନୁଷ୍ୟଠାରେ କିଏ ଅଛି ? (୨) ମନୁଷ୍ୟକୁ କାହିଁରୁ ବଞ୍ଚିତ କରାଯାଇଅଛି ? (୩) ମନୁଷ୍ୟ କାହିଁରେ ବଞ୍ଚେ ? ମର୍ତ୍ତ୍ୟପୁରକୁ ଯାଇ ଏହି ତିନୋଟି ସତ୍ୟ ଶିକ୍ଷା କଲା ପରେ ତୁମେ ପୁଣି ସ୍ୱର୍ଗ-ପୁରକୁ ଫେରିଆସିବ ।'

ବାଧ୍ୟ ହୋଇ ମୁଁ ପୃଥିବୀକୁ ଆସି ସ୍ତ୍ରୀଲୋକଟିର ଆତ୍ମାକୁ ନେଇ ଗଲି । ସଙ୍ଗେ ସଙ୍ଗେ ତାର ମୃତ ଶରୀର ଗଡ଼ିଯାଇ ଗୋଟିଏ ଶିଶୁର ପାଦକୁ ଚାପିଦେଲା । ମୁଁ ତାର ଆତ୍ମାକୁ ନେଇ ସ୍ୱର୍ଗକୁ ଯାଉଥିବା ବେଳେ ଗୋଟାଏ ପ୍ରଚଣ୍ଡ ପବନ ବହିଲା । ମୋର ପକ୍ଷ ଛିଡ଼ିପଡ଼ିଲା । ମୁଁ ପୃଥିବୀ ଉପରକୁ ଖସିପଡ଼ିଲି; ମାତ୍ର ସ୍ତ୍ରୀଲୋକଟିର ଆତ୍ମା ସ୍ୱର୍ଗଆଡ଼କୁ ଗତି କଲା । ମୁଁ ରାସ୍ତାକଡ଼ରେ ପଡ଼ିରହିଲି ।"

## ( ଏଗାର )

ଏବେ ସାଇମନ ଓ ମେଟ୍ରେନା ବୁଝିପାରିଲେ ଯେ ସେମାନେ ଯାହାକୁ ଘରେ ରଖି ଖାଇବାକୁ ପିନ୍ଧିବାକୁ ଦେଉଥିଲେ, ସେ ସାଧାରଣ ମନୁଷ୍ୟ ନୁହେଁ—ସେ ହେଉଛୁ ଜଣେ ଦେବଦୂତ । ସେମାନେ ଏହା ଭାବି ବିଶେଷ ଆନନ୍ଦିତ ହେଲେ । ଦେବଦୂତ କହିବାକୁ ଲାଗିଲେ, "ମୁଁ ଉଲଗ୍ନ ଭାବରେ ଏକାକୀ ଏକ ପଡ଼ିଆରେ ପଡ଼ିଥିଲି । ମନୁଷ୍ୟ ହେବା ପୂର୍ବରୁ ଦେବଦୂତ ଥିଲାବେଳେ ମୁଁ ମନୁଷ୍ୟର ଦରକାର କଅଣ, ଶୀତ, ଗ୍ରୀଷ୍ମ, କ୍ଷୁଧା, ତୃଷା ଏ ସବୁ କିଛି ଜାଣି ନ ଥିଲି । ଏବେ ସେସବୁ ଅନୁଭବ କଲି । ପାଖରେ ଈଶ୍ବରଙ୍କ ଉଦ୍ଦେଶ୍ୟରେ ଗୋଟିଏ ଗୀର୍ଜା ଥିବାର ଦେଖି ଆଶ୍ରୟ ନିମନ୍ତେ ସେଠାକୁ ଗଲି । ମାତ୍ର ଗୀର୍ଜାର ଦ୍ୱାର ବନ୍ଦଥିବାରୁ ଭିତରେ ପ୍ରବେଶ କରି ନ ପାରି ଶୀତ ପବନରୁ ରକ୍ଷା ପାଇବାପାଇଁ ଗୀର୍ଜାର ପଛରେ କାନ୍ଥକୁ ଆଉଜି ବସିଲି ।

ସନ୍ଧ୍ୟାବେଳକୁ କ୍ଷୁଧା ଓ ଶୀତରେ ମୋତେ କଷ୍ଟ ବୋଧ ହେଲା । ଜଣେ ଲୋକ ରାସ୍ତାରେ ଆସୁଥିବାର ଦେଖି ପାରିଲି । ସେ ଯୋଡ଼ାଏ ଜୋତା ଧରି ମନକୁ ମନ କଣ କହି କହି ଯାଉଥିଲା । ମନୁଷ୍ୟ ହେବା ପରେ ମୋର ଏଇ ଲୋକଟି ସହିତ ପ୍ରଥମ ସାକ୍ଷାତ । ତାର ମୁହଁଟା ମୋତେ ଭୟାନକ ବୋଧହେଲା । ମୁଁ ନିଜ ମୁହଁ ବୁଲାଇଦେଲି । ସେ ଲୋକଟି ମନକୁ ମନ ଯାହା କହୁଥିଲା ସେଥିରୁ ବୁଝିଲି, କିପରି ଶୀତଲୁଗା କିଣିବ, କିପରି ସ୍ତ୍ରୀ ପୁଅଙ୍କୁ ଖାଇବାକୁ ଯୋଗାଇବ ବୋଲି ସେ ଚିନ୍ତା କରୁଥିଲା । ସେତେବେଳେ ମୁଁ ଭାବିଲି, ମୁଁ ଭୋକରେ ଶୀତରେ ମରିବାକୁ ବସିଛି, ଆଉ ଏ ଲୋକଟା କେବଳ ନିଜ କଥା, ନିଜର ସ୍ତ୍ରୀ କଥା ଓ ନିଜର ପିଲାଙ୍କ କଥା ଭାବୁଛି । ତାର ଚିନ୍ତା କେଉଁଠୁ ଖାଇବାକୁ

ଅଣିବ, କେଉଁଠୁ ଲୁଗା ଅଣିବ । ସେ ମୋତେ ସାହାଯ୍ୟ କରିବ କିପରି ? ସେ ମୋତେ ଦେଖି ବିରକ୍ତ ହୋଇ ରାସ୍ତା ଅରି ପାଖେ ଚାଲିଗଲା । ମୁଁ ହତାଶ ହୋଇପଡ଼ିଲି, କିନ୍ତୁ ଅଳ୍ପ ସମୟ ପରେ ସେ ମୋ ନିକଟକୁ ପୁଣି ଆସିଲା । ମୁଁ ତାକୁ ଚିହ୍ନିଲି । ଯେଉଁ ଲୋକଟି ବିରକ୍ତ ହୋଇ ଚାଲିଯାଇଥିଲା, ଏ ଯେ ସେହି ଲୋକ ଏହା ମୁଁ ବିଶ୍ୱାସ କରି ପାରିଲି ନାହିଁ । ସେ ଲୋକର ମୁହଁରେ ମୃତ୍ୟୁର କରାଳ ଛାୟା ଦେଖିଥିଲି, ମାତ୍ର ଏବେ ସେ ଜୀବନ୍ତ ଓ ତାହାରିଠାରେ ମୁଁ ଭଗବାନଙ୍କ ସତ୍ତା ଦେଖିପାରିଲି । ସେ ମୋ ପାଖକୁ ଆସି ନିଜର ଜାମା ପିନ୍ଧିବାକୁ ଦେଇ ମୋତେ ତା ଘରକୁ ଆଣିଲା । ଘରେ ପହଞ୍ଚିଲାମାତ୍ରେ ଯେଉଁ ସ୍ତ୍ରୀକୁ ଦେଖିଲି ସେ ଅଦ୍ଭୁତ ଭୟଙ୍କରୀ । ତାର ମୁହଁରୁ ମୃତ୍ୟୁର ଶ୍ୱାସ ବାହାରୁଥିଲା । ତାର ଚାରିପାଖେ ମୃତ୍ୟୁର ଗନ୍ଧ । ସେ ଗନ୍ଧରେ ମୋର ଶ୍ୱାସରୁଦ୍ଧ ହୋଇଗଲା । ସେ ମୋତେ ଘରୁ ତଡ଼ିଦେବାକୁ ବସିଥିଲା । ମୋତେ ତଡ଼ିଦେଇଥିଲେ ସେ ନିଶ୍ଚୟ ମୃତ୍ୟୁ ମୁଖରେ ପଡ଼ିଥାନ୍ତା, ଏହା ମୁଁ ଜାଣିଥିଲି । ଏହି ସମୟରେ ତାର ସ୍ୱାମୀ ତାକୁ ଈଶ୍ୱରଙ୍କ ମହିମାର କଥା କହିଲା । ତତ୍‌କ୍ଷଣାତ୍ ସେ ବଦଳିଗଲା । ସେ ମୋତେ ଖାଇବାକୁ ଦେଇ ମୋ ଆଡ଼େ ଚାହିଁଲା । ସେତେବେଳକୁ ତାଠାରେ ମୃତ୍ୟୁର ଅସ୍ତିତ୍ୱ ଦେଖି ପାରିଲି ନାହିଁ । ସେ ହୋଇଯାଇଥିଲା ଜୀବନ୍ତ । ତାଠାରେ ମଧ୍ୟ ମୁଁ ଈଶ୍ୱରଙ୍କ ସତ୍ତା ଦେଖିପାରିଲି ।

ଭଗବାନ ମୋତେ ଯେଉଁ ପ୍ରଥମ ସତ୍ୟଟି ଶିଖିବାକୁ କହିଥିଲେ, ତାହା ମୋର ମନେପଡ଼ିଗଲା । ମନୁଷ୍ୟଠାରେ କଏ ଅଛି—ଏହି ପ୍ରଶ୍ନର ଉତ୍ତର ମୁଁ ପାଇସାରିଥିଲି । ମନୁଷ୍ୟଠାରେ ପ୍ରେମ ଅଛି, ଏହି ସତ୍ୟଟି ମୁଁ ପାଇଲି । ଈଶ୍ୱର ମୋତେ ଯାହା

କହୁଥିଲେ ତାହା ଦେଖାଇଦେଇଥିବାରୁ ମୋର ମନରେ ଆନନ୍ଦ ହେଲା । ତେଣୁ ମୁଁ ପ୍ରଥମ ଥର ହସିଥିଲି । ମାତ୍ର ମୋର ଆଉ ଦୁଇଟି ସତ୍ୟ ଶିଖିବାକୁ ବାକୀ ଥିଲା—ମନୁଷ୍ୟକୁ କାହିଁରୁ ବଞ୍ଚିତ କରାଯାଇଅଛି ଓ ମନୁଷ୍ୟ କାହିଁରେ ବଞ୍ଚେ ?

ମୁଁ ତୁମ ପାଖରେ ରହିଲି । ବର୍ଷଟିଏ କଟିଗଲା । ଜଣେ ଧନୀ ଭଦ୍ରଲୋକ ଆସି ଯୋଡ଼ାଏ ବୁଟ୍‌ର ବରାଦ ଦେଇ କହିଲେ—ବୁଟ୍ ଯୋଡ଼ାକର ଆକାର ଯେପରି ବର୍ଷକ ଭିତରେ ଖରାପ ନ ହୁଏ । ମୁଁ ତାଙ୍କ ଆଡ଼କୁ ଗୁହିଁଲାବେଳକୁ ତାଙ୍କ ପଛରେ ମୃତ୍ୟୁର ଦୂତଙ୍କୁ ଦେଖିପାରିଲି । ମୋ ଛଡ଼ା ଅନ୍ୟ କେହି ତାଙ୍କୁ ଦେଖି ପାରି ନ ଥିଲେ । ମୁଁ ତାଙ୍କୁ ଚିହ୍ନି ପାରିଥିଲି । ସେହି ଦିନ ସନ୍ଧ୍ୟା ପୂର୍ବରୁ ମୃତ୍ୟୁଦୂତ ସେହି ଭଦ୍ରଲୋକଙ୍କର ଆତ୍ମାକୁ ସ୍ୱର୍ଗକୁ ନେଇଯିବେ ବୋଲି ମୁଁ ଜାଣିପାରିଥିଲି । ସେତେବେଳେ ମୁଁ ଭାବିଲି, 'ଲୋକଟା ବର୍ଷକ ପାଇଁ ପାଞ୍ଚ କରୁଛି, ମାତ୍ର କେଇ ଘଣ୍ଟା ପରେ ଯେ ତାର ମରଣ ହେବ ତାହା ସେ ଜାଣେ ନାହିଁ । ମୋର ମନେପଡ଼ିଗଲା ଭଗବାନଙ୍କର ଦ୍ୱିତୀୟ ସତ୍ୟର କଥା, ମନୁଷ୍ୟକୁ କାହିଁରୁ ବଞ୍ଚିତ କରାଯାଇଅଛି ।

ମନୁଷ୍ୟଠାରେ କଅଣ ଅଛି, ଆଗରୁ ଶିକ୍ଷା କରିଥିଲି । ଏବେ ମନୁଷ୍ୟକୁ କାହିଁରୁ ବଞ୍ଚିତ କରାଯାଇଛି, ତାହା ଶିଖିଲି । ଏହି ସତ୍ୟଟି ହେଉଛି—ମନୁଷ୍ୟର କଅଣ ଦରକାର ତାହା ସେ ନିଜେ ଜାଣେ ନାହିଁ । ସେଦିନ ମୁଁ ଦ୍ୱିତୀୟ ଥର ପାଇଁ ହସିଥିଲି । ଯେଉଁ ମୃତ୍ୟୁଦୂତଙ୍କୁ ମୁଁ ସେଦିନ ଦେଖିଥିଲି, ସେ ମୋର ବନ୍ଧୁ । ତାଙ୍କୁ ଦେଖିବାରୁ ମୋର ଆନନ୍ଦ ହୋଇଥିଲା । ଆଉରି ଆନନ୍ଦର କାରଣ ହେଲା, ଭଗବାନ ଏଡ଼େ ସ୍ପଷ୍ଟ ଭାବରେ ମୋତେ ଦ୍ୱିତୀୟ ସତ୍ୟଟି ଶିଖାଇଦେଲେ ।

ତଥାପି ମୋର ଗୋଟିଏ ସତ୍ୟ ଶିଖିବାକୁ ବାକୀ ଥିଲା—ମୁ ମନୁଷ୍ୟ କାହିଁରେ ବଞ୍ଚେ ? ଈଶ୍ୱର ମୋତେ କେବେ ଏହି ସତ୍ୟଟି ଶିକ୍ଷା ଦେବେ ଗୁହିଁ ରହିଥିଲି । ମୋର ଏଠାରେ ରହିବାର ଷଷ୍ଠ ବର୍ଷରେ ଯାଆଁଳା ଝିଅ ଦୁଇଟି ଘେନି ଜଣେ ସ୍ତ୍ରୀ ଲୋକ ଆସିଲେ । ଝିଅ ଦୁଇଟିଙ୍କୁ ମୁଁ ଚିହ୍ନି ପାରିଲି । ଯେଉଁ ପିଲା ଦୁଇଟିଙ୍କର ମାଆର ଆତ୍ମାକୁ ମୁଁ ନେଇପାଇଥିଲି ଏମାନେ ସେଇ । ସେମାନେ ମାଆର ମୃତ୍ୟୁ ପରେ କିପରି ବଞ୍ଚିରହିଅଛନ୍ତି ତାହା ଶୁଣି ମୁଁ ଭାବିଲି, 'ଏମାନଙ୍କ ମାଆ ଏଇ ପିଲାଙ୍କୁ ପାଳି ବଡ଼ କରିବା ଯାଏ ସଂସାରରେ ରହିବାକୁ ଅନୁରୋଧ କରିଥିଲା । ସେ କହିଥିଲା, ବାପ ମାଆ ବିନା ପିଲା ବଞ୍ଚିପାରେ ନାହିଁ । ମୁଁ ତା କଥାରେ ବିଶ୍ୱାସ କରି ତାକୁ ଛାଡ଼ି ଯାଇଥିଲି; ମାତ୍ର ଜଣେ ପୂରା ଅଚିହ୍ନା ସ୍ତ୍ରୀଲୋକ ପିଲା ଦୁଇଟିଙ୍କୁ ପାଳି ସେମାନଙ୍କର ଯତ୍ନ ନେଉଛି । ସେହି ସ୍ତ୍ରୀ ଲୋକଟି ଯେତେବେଳେ ଅନ୍ୟର ଏହି ପିଲା ଦୁଇଟିଙ୍କ ଉପରେ ସମସ୍ତ ସ୍ନେହ ଅଜାଡ଼ିଦେଇ ଲୁହ ଗଡ଼ାଇଲା, ସେତେବେଳେ ମୁଁ ତାହାଠାରେ ସାକ୍ଷାତ ଈଶ୍ୱରଙ୍କୁ ଦେଖିପାରିଲି ଓ ତୃତୀୟ ସତ୍ୟଟି—ମନୁଷ୍ୟ କାହିଁରେ ବଞ୍ଚେ—ପାଇଲି । ମୋତେ ଈଶ୍ୱର ତୃତୀୟ ସତ୍ୟଟି ଶିକ୍ଷା ଦେଇ ମୋର ସମସ୍ତ ଦୋଷ କ୍ଷମା ଦେଇଅଛନ୍ତି । ସେଥିପାଇଁ ମୁଁ ତୃତୀୟ ଥର ହସିଲି ।

ମାଇକେଲଙ୍କର ଦେହରୁ ସମସ୍ତ ପୋଷାକ ତଳେ ପଡ଼ିଗଲା । ଗୋଟାଏ ଉଜ୍ଜ୍ୱଳ ଜ୍ୟୋତି ତାଙ୍କୁ ଏପରି ଆବୃତ କରିଦେଲା ଯେ କେହି ଆଉ ତାଙ୍କ ଆଡ଼କୁ ଗୁହିଁ ପାରିଲେ ନାହିଁ । ତାଙ୍କର ସ୍ୱର ଗୁରୁଗମ୍ଭୀର ହୋଇଗଲା । ମନେହେଲା, ସେ ସ୍ୱର ମର୍ତ୍ତ୍ୟର ମନୁଷ୍ୟର ନୁହେଁ, ସ୍ୱର୍ଗରାଜ୍ୟରୁ ସେ ସ୍ୱର ଆସୁଛି । ଦେବଦୂତ

କହିଲେ, "ମୁଁ ଏହି ଶିକ୍ଷା ଶେଷରେ ପାଇଛି, ମନୁଷ୍ୟ ନିଜ ସୁଖ ପଛରେ ଧାଇଁ ବଞ୍ଚେ ନାହିଁ, ସେ ବଞ୍ଚେ ପ୍ରେମରେ ।"

ଦେବଦୂତ ଭଗବାନଙ୍କର ସ୍ତୁତି ଗାନ କଲେ । ସେହି ସ୍ତୁତିର ଧ୍ୱନିରେ ସମଗ୍ର ଘରଟି କମ୍ପି ଉଠିଲା । ଘରର ଛାତ ଉଡ଼ିଗଲା ଓ ଭୂମିରୁ ଗୋଟିଏ ପ୍ରକାଣ୍ଡ ଅଗ୍ନି ଶିଖା ସ୍ୱର୍ଗ ପର୍ଯ୍ୟନ୍ତ ଲମ୍ବିଗଲା । ସାଇମନ, ତାର ସ୍ତ୍ରୀ ଓ ପିଲାମାନେ ଭସ୍ମୀଭୂତ ହୋଇଗଲେ । ଦେବଦୂତ ସ୍ୱର୍ଗକୁ ଚାଲିଗଲେ ।

କିଛି ସମୟ ପରେ ସାଇମନ ଦେଖିବାକୁ ପାଇଲା, ତାର ଘରଟି ପୂର୍ବପରି ରହିଛି । ନିଜ ପରିବାର ଛଡ଼ା ସେ ଘରେ ଆଉ କେହି ନାହାନ୍ତି ।

---

# ମନୁଷ୍ୟର କେତେ ଜମି ଲୋଡ଼ା

( ଏକ )

ଦୁଇଟି ଭଉଣୀ ଥିଲେ । ବଡ଼ ଭଉଣୀର ବିବାହ ହୋଇଥିଲା ସହରର ଏକ ଧନୀ ବ୍ୟବସାୟୀ ସହିତ । ସାନ ଭଉଣୀକୁ ମଫସଲର ଜଣେ କୃଷକ ବିବାହ କରିଥିଲେ । ଥରେ ବଡ଼ ଭଉଣୀଟି ତାର ସାନ ଭଉଣୀ ଘରକୁ ଆସିଥିଲା । ମଫସଲରେ ଯାହାସବୁ ମିଳେ ସେଥିରେ ସେ ବଡ଼ ଭଉଣୀର ଚର୍ଚ୍ଚା କଲା । ଦିନେ ଦୁଇ ଭଉଣୀ ବସି ଗୃହା ପିଉ ପିଉ ଗପ କରୁଥିଲେ । ବଡ଼ ଭଉଣୀ ଗର୍ବରେ ସହରୀ ଜୀବନର ପ୍ରଶଂସା କରି ସହରର ସୁଖସ୍ୱାଚ୍ଛନ୍ଦ୍ୟର ବର୍ଣ୍ଣନା କଲା । ସେ କହିଲା, ସହରର ଲୋକେ ଖୁବ୍ ଭଲ ଫେଶନର ପୋଷାକ ପିନ୍ଧନ୍ତି, ଖାଇବା ପିଇବାକୁ ଖୁବ୍ ଭଲ ଜିନିଷମାନ ମିଳେ । ସେମାନେ ଥିଏଟର ଦେଖି ଯାଆନ୍ତି ଓ ନାନାପ୍ରକାର ଆମୋଦପ୍ରମୋଦରେ ଦିନ କଟାନ୍ତି ।

ସାନ ଭଉଣୀକୁ ଏସବୁ କଥା ଭଲ ଲାଗିଲା ନାହିଁ । ସେ ସହରର ବ୍ୟବସାୟୀମାନଙ୍କ ଜୀବନକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ କୃଷକ ଜୀବନର ପ୍ରଶଂସା କରି କହିଲା, "ମୁଁ ସହର ଜୀବନ କଟାଇବାକୁ ଚାହେଁନାହିଁ । ଆମେ ରୋଟା ଖାଇ ମୋଟା ପିନ୍ଧୁଛୁ ସତ, କିନ୍ତୁ ଆମର କୌଣସି ଚିନ୍ତା ନାହିଁ । ତୁମେ ଭଲ ଖାଉଥିବ, ଭଲ ପିନ୍ଧୁଥିବ, ମଉଜ ମଜଲିସ କରୁଥିବ । ତୁମର ଯେତିକି ଦରକାର ତାଠାରୁ ବେଶି ଅୟ କରୁଥିବ ସତ; ମାତ୍ର ଦିନେ ତୁମର ସବୁ ଗୁଲିଯାଇପାରେ । ସହରରେ ଦେଖାଯାଏ, ଆଜି ଯେ ଲକ୍ଷପତି କାଲି ସେ ଫକୀର ହୋଇ ଭିକମାଗି ବୁଲୁଛି । ଆମ ଜୀବନ ନିରାପଦ ।

ସ୍ତ୍ରୀର ବେଶୀ ଧନ ନଥାଏ ସତ, କିନ୍ତୁ ସେ ଜୀବନଟାଯାକ ସେହିପରି ଦୁଃଖେ ସୁଖେ କଟାଇଦିଏ । ଆମ ଘରେ ଟଙ୍କା ପଇସା ନାହିଁ ସିନା, କିନ୍ତୁ ସବୁବେଳେ ଖାଇବା ମୁଠାକପାଇଁ ଯଥେଷ୍ଟ ମିଳୁଛି ।

ବଡ଼ ଭଉଣୀ ସାନ ଭଉଣୀର କଥାକୁ ହସରେ ଉଡ଼ାଇ ଦେଇ କହିଲା, "ହଁ, ଯଥେଷ୍ଟ ନୁହେଁ କଅଣ ? ପଶୁଭଳି ଚଳିଲେ ଯଥେଷ୍ଟ ନୁହେଁ କାହିଁକି ? ଭଦ୍ର ଭାବରେ କିପରି ଚଳିବାକୁ ହୁଏ, ବଡ଼ଲୋକମାନେ କିପରି ଜୀବନ କଟାନ୍ତି ଜାଣିଥିଲେ ତୁମେ ଏପରି କହନ୍ତ ନାହିଁ । ତୁମ ସ୍ୱାମୀ ଦିନରାତି ଜମିରେ ଖଟି ଯେତେ ଅର୍ଜିଲେ ସୁଦ୍ଧା ତୁମେ ଏମିତି ପଶୁପରି ଜୀବନ କଟେଇ ପଶୁପରି ମରିବ । ତୁମ ପିଲାଏ ମଧ୍ୟ ସେହିପରି ହେବେ ।

ସାନ ଭଉଣୀ କହିଲା, "ହେଲା ଏବେ; ସେଥିରେ କ୍ଷତି କଅଣ ? ଆମକୁ କଠିନ ପରିଶ୍ରମ କରିବାକୁ ପଡ଼ୁଛି, କିନ୍ତୁ ଆମ ଜୀବନରେ ଆପଦ ବିପଦ ନାହିଁ । ଆମକୁ କାହା ପାଖରେ ମୁଣ୍ଡ ନୁଆଁଇବାକୁ ପଡ଼ୁନାହିଁ । କିନ୍ତୁ ସହରରେ ତୁମର ନାନା ଚିନ୍ତା । ଆଜି ତୁମର ସବୁ ଭଲଅଛି । କାଲି ଯେବେ ତୁମ ସ୍ୱାମୀ ସଇତାନର ବୁଦ୍ଧିରେ ପଡ଼ି ଜୁଆଖେଳିବେ କି ମଦ ପିଇବେ ତେବେ ତୁମର ସବୁ ଯିବ । ସହର ଜାଗାରେ ଏପରି ଅନେକ ଘଟନା ଘଟିବାର ଦେଖାଯାଇଛି ।"

ସାନଭଉଣୀର ସ୍ୱାମୀ ପାହୋମ ଚୁଲି ପାଖରେ ବସି ଦୁଇ ଭଉଣୀଙ୍କର କଥାବାର୍ତ୍ତା ଶୁଣୁଥିଲା । ସେ କହିଲା, "ମୋ ସ୍ତ୍ରୀର କଥାଟା ସତ । ପିଲାଟିଦିନୁଁ ଆମେ ମାଟିରେ ଖଟିଆସୁଛୁ । ଆମ ଭଳିଆ ଗୃହସ୍ଥଙ୍କ ମୁଣ୍ଡରେ ବାଜେକଥା ପଶିବ କେତେବେଳେ ? ତେବେ ଆମର ଗୋଟିଏ ଅସୁବିଧା ହେଉଛି, ଆମର ଯଥେଷ୍ଟ ଜମି ନାହିଁ । ଯଦି

ଆମର ବହୁତ ଜମି ଥାଆନ୍ତା ତେବେ କାହାକୁ ଡର ନଥାନ୍ତା । ନିଜେ ସଇତାନ ବି ମୋତେ ଭୟ ଦେଖାଇ ପାରନ୍ତା ନାହିଁ ।”

ଦୁଇ ଭଉଣୀଙ୍କର ଗୃହାଣିଆ ଶେଷ ହେଲା । ଅଦ୍ଭୁର କଣ୍ଟି ସମସ୍ତ ଯାଏ ପୋଷାକ ବିଷୟରେ ଆଲୋଚନା ଚାଲିଲା । ତା ପରେ ଦୁହେଁଯାକ ଶୋଇବାକୁ ଗଲେ ।

ସଇତାନ ଚୂଲି ପଛରେ ଲୁଚିରହି ସବୁ ଶୁଣୁଥିଲା । ସ୍ତ୍ରୀର କଥାରେ ସ୍ୱାମୀର ମନରେ ଗର୍ବ ଆସିଥିବାର ଦେଖି ସେ ଖୁବ୍ ଆନନ୍ଦିତ ହେଲା । ଚାଷୀ ଭାବିଲାଣି ଯେ ଯଥେଷ୍ଟ ଜମି ପାଇଲେ ସେ ସଇତାନକୁ ସୁଦ୍ଧା ଖାତିର କରିବ ନାହିଁ । ସଇତାନ ମନେ ମନେ ଭାବିଲା, “ଅଚ୍ଛା, ତୋର ମୋର ଦେଖାଦେଖି ହେବ । ଏଇ ଜମି ଦେଇ ତୋତେ ମୋ ଅକ୍ତିଆରକୁ ଆଣିବି ।”

( ଦୁଇ )

ସେହି ଗ୍ରାମ ନିକଟରେ ଜଣେ ଭଦ୍ରମହିଳା ବାସ କରୁଥିଲେ । ତାଙ୍କର ତିନିଶହ ଏକର ଜମି ଥିଲା । ସେ ଚାଷୀମାନଙ୍କ ସହିତ ଭଲ ଭାବ ରଖି ଚଳୁଥିଲେ; କିନ୍ତୁ ଯେତେବେଳେ ସେ ଜମିର ତତ୍ତ୍ୱ ନେବାପାଇଁ ଜଣେ ବୃଦ୍ଧ ସୈନିକକୁ ମେନେଜରରୂପେ ନିଯୁକ୍ତ କଲେ ସେତେବେଳେ ଚାଷୀମାନଙ୍କ ଭିତରେ ଭୀଷଣ ଅସନ୍ତୋଷ ସୃଷ୍ଟିହେଲା । ସାମାନ୍ୟ କାରଣ ଦେଖାଇ ସେ ସେମାନଙ୍କ ଠାରୁ ଜରିମାନା ଅଦାୟ କରିବାକୁ ଲାଗିଲା । ପାହୋମ ଖୁବ୍ ସାବଧାନରେ ଚଳୁଥାଏ । ତଥାପି ବେଳେ ବେଳେ ତାର ଘୋଡ଼ା ମହିଳାଙ୍କର ଫସଲ କିଆରିରେ ପଶିଯାଏ କିମ୍ବା ତାର

ଗାଈଟାଏ ମହୁଲାଙ୍କ ବଗିଚାରେ ପଶି ଗଛ ପତ୍ର ଖାଇଦିଏ । କେତେ-କେଳେ ଅବା ପାହୋମର ବଳଦ ମହୁଲାଙ୍କର ଫସଲ ଖାଇଦିଏ । ଏପରି କିଛି ଘଟିଲେ ପାହୋମଠାରୁ ଜରିମାନା ଅଦାୟ ହୁଏ ।

ପାହୋମ ଜରିମାନା ଦିଏ ସତ, କିନ୍ତୁ ତା ମନରେ ଭାରି ଅଶାନ୍ତି ଅସେ । ଜରିମାନା ଦେଇ ରାଗରେ ସେ ଘରକୁ ଯାଇ ସମସ୍ତଙ୍କ ଉପରେ ବୃଥା ବିରକ୍ତ ହୁଏ । ସେ ବର୍ଷ ଖରାଦିନଯାକ ଏହି ମେନେଜରର ଯୋଗେ ପାହୋମ ବହୁତ ହଇରାଣ ହେଲା । ଶୀତଋତୁ ଅସିବାରୁ ଘୋଡ଼ା ଓ ଗାଈଗୋରୁ ବାହାରକୁ ଚରିବାକୁ ଗଲେନାହିଁ । ଘରେ ବନ୍ଧା ହୋଇ ରହିଲେ । ତେଣୁ ପାହୋମ କେତେ ମାସ ଯାଏ ମେନେଜରର ଅତ୍ୟାଚାରରୁ ରକ୍ଷାପାଇଲା; ତା ମନରେ ଟିକିଏ ଶାନ୍ତି ଅସିଲା । ଗୋରୁଗାଈ ଘରେ ବନ୍ଧାହୋଇ ଥିବାରୁ ସେମାନଙ୍କ ପାଇଁ ନଡ଼ା କିଣିବାକୁ ପଡ଼ିଲା । ସେଥିରେ ପଇସା ଖରଚ ହେଲା । ଏ ଖରଚଟା ପାହୋମକୁ ବାଧିଲା ।

ଏଇ ଶୀତଦିନେ ଶୁଣାଗଲା, ମହୁଲା ଜଣକ ତାଙ୍କର ସମସ୍ତ ଜମି ବିକିଦେଇ ଅନ୍ୟଅଡ଼େ ଚାଲିଯିବେ । ସଦର ରାସ୍ତା ପାଖର ହୋଟେଲବାଲା ସବୁ ଜମି କିଣିବ ବୋଲି ପ୍ରସ୍ତାବ ଦେଇଛି ।

ଏ ସମ୍ବାଦରେ ଚାଷୀମାନଙ୍କ ଭିତରେ ଚହଳ ପଡ଼ିଗଲା । ସେମାନଙ୍କର ପ୍ରଧାନ ଚିନ୍ତା ହେଲା, ଏ ଲୋକଟା ସବୁ ଜମି କିଣିନେଲେ ଚାଷୀମାନଙ୍କ ଉପରେ ସେ ସୈନିକଠାରୁ ଅହୁରି ବେଶି ଅତ୍ୟାଚାର କରିବ, ଅହୁରି ଅଧିକ ଜରିମାନା ଅଦାୟ କରିବ ।

ଗ୍ରାମର ଚାଷୀମାନେ ମିଳି ଗୋଟିଏ ସମବାୟସମିତି ଗଢ଼ି ସମିତି ପକ୍ଷରୁ ସବୁ ଜମି କିଛି ବେଶି ମୂଲ୍ୟରେ କିଣିବେ ବୋଲି

ମହାଳାଙ୍କୁ କହିଲେ । ମହାଳା ଏହି ପ୍ରସ୍ତାବରେ ରାଜି ହେଲେ । କଥାହେଲା—ସମସ୍ତ ପକ୍ଷରୁ ଜମି କଣାଯିବ; ସେଥିରେ ସବୁ ଚାଷୀଙ୍କର ସମାନ ଅଂଶ ରହିବ ଓ ସମସ୍ତେ ସମାନ ଟଙ୍କା ଦେବେ । ମାତ୍ର ଏହି ପ୍ରସ୍ତାବ କାର୍ଯ୍ୟତଃ ହୋଇପାରିଲା ନାହିଁ । ଦୁଇଥର ସଭା ବସିଲା; କିନ୍ତୁ ଏହି ପ୍ରସ୍ତାବରେ ଅନେକେ ରାଜି ହେଲେ ନାହିଁ । ଏଥିମଧ୍ୟରେ ସଇତାନ ଚାଷୀମାନଙ୍କ ମନରେ ସନ୍ଦେହ ଜନ୍ମାଇ ଦେଇଥିବାରୁ କାହାରି ଅନ୍ୟଠାରେ ବିଶ୍ୱାସ ନଥିଲା । ଶେଷରେ ସ୍ଥିରହେଲା, ଯେ ଯେତେ ଟଙ୍କା ଦେଇପାରିବ, ସେହି ଅନୁସାରେ ଜମି କିଣିବ । ଏ ପ୍ରସ୍ତାବରେ ମଧ୍ୟ ମହାଳା ସ୍ୱୀକୃତ ହେଲେ ।

ପାହୋମର ପଡ଼ୋଶୀର ଜଣେ ଲୋକ ପଚିଶ ଏକର ଜମି କିଣିବାର ବନ୍ଦୋବସ୍ତ କରୁଛି ବୋଲି ସେ ଶୁଣିପାରିଲା । ଲୋକଟାକୁ ସମସ୍ତ ଟଙ୍କା ନଗଦ ଦେବାକୁ ପଡ଼ିବ ନାହିଁ । ଅଧେ ଟଙ୍କା ନଗଦ ଦେବ; ଆଉ ଅଧକ ବର୍ଷେ ପରେ ଦେବ । ପାହୋମ ଏହିପରି କିଛି ଜମି କିଣିବା ପାଇଁ ବ୍ୟଗ୍ର ହେଲା । ସେ ଭାବିଲା, "ଏତେ ଲୋକ ଜମି କିଣୁଛନ୍ତି । ଏଭଳି ସୁବିଧା ଛାଡ଼ିବ କାହିଁକି ?"

ସେ ନିଜ ସ୍ତ୍ରୀକୁ କହିଲା, "ଚାଷୀମାନେ ସମସ୍ତେ କିଛି କିଛି ଜମି କିଣୁଛନ୍ତି । ଜମିମାଲିକକୁ ଜରିମାନା ଦେଇ ଦେଇ ଆମ କଥା ସରିଲାଣି । ଆମର ନିଜ ଜମି ଥିଲେ କିଏ ଆମଠୁ ଜରିମାନା ନେଅନ୍ତା କାହିଁକି ? ଆମର ନିତାନ୍ତ ପକ୍ଷେ ଚାଳିଶ ଏକର ଜମି କିଣିବା ।"

ଜମି କିଣିବା ସ୍ଥିର କରି କିପରି ଟଙ୍କା ଯୋଗାଡ଼ ହେବ, ସେ ବିଷୟରେ ଦୁହେଁ ବସି ପରାମର୍ଶ କଲେ । ଘରେ ଶହେ ଟଙ୍କା ଥିଲା । ଗୋଟିଏ ଘୋଡ଼ା ବିକିଦେଲେ ଓ କିଛି ମହୁଫେଣା ମଧ୍ୟ ବିକିଦେଲେ । ଗୋଟିଏ ପୁଅକୁ ଜଣକ ଘରେ ଚାକର କରି ରଖାଇ

ବର୍ଷଙ୍କର ଦରମା ଅଗତ୍ତୁରା ନେଇଅସିଲେ । ଆଉ କଛୁ ଟଙ୍କା ଜଣେ ବନ୍ଧୁଙ୍କଠାରୁ ଉଧାର କଲେ । ଏହାପରେ ସବୁ ଟଙ୍କା ଠୁଳ କରିବାରୁ ପ୍ରାଳଶଏକର ଜମିର ଅଧାଦାମ୍ ହୋଇଗଲା ।

ପାହୋମ ପ୍ରାଳଶ ଏକର ଜମି ବାଛି କଣିବ ବୋଲି ମହିଳାଙ୍କୁ ପ୍ରସ୍ତାବ ଦେଲା । ମହିଳା ଜମିର ଅଧାମୂଲ୍ୟ ଅଗତ୍ତୁରା ନେଲେ । ସହରରେ ଜମି ରେଜିଷ୍ଟ୍ରି ହୋଇଗଲା । ସର୍ତ୍ତ ରହିଲା ଯେ, ଅବଶିଷ୍ଟ ଅଧିକ ଟଙ୍କା ଦୁଇବର୍ଷ ମଧ୍ୟରେ ପରିଶୋଧ ହେବ ।

ଏବେ ପାହୋମ ଏତିକ ଜମିର ମାଲିକ ହେଲା । ପ୍ରଥମ ବର୍ଷ ସେ ବିହନ କରଜ ଅଣି ଏଥିରେ ଫସଲ କଲା । ସେ ବର୍ଷ ଫସଲ ଖୁବ୍ ଭଲ ହେବାରୁ ସେ ବର୍ଷକ ଭିତରେ ବିହନ. ଜମିମୂଲ୍ୟର ବାକି ଟଙ୍କା ଓ ବନ୍ଧୁଘରୁ ଧାର ଅଣିଥିବା ଟଙ୍କା ସବୁ ପରିଶୋଧ କରିଦେଲା । ନିଜ ଜମି ଚୁଷବାସ କରି ସେ ଫସଲ ଅମଳ କଲା । ସେଇ ଜମିରୁ ସେ କାଠ ପାଇଲା, ନଡ଼ା ପାଇଲା ଓ ଗୋରୁ ଗାଈଙ୍କ ପାଇଁ ଘାସ ପାଇଲା । ତାହାକୁ ଆଉ କାହାରି ପାଖେ ମୁଣ୍ଡ ନୁଆଁଇବାକୁ ପଡ଼ୁ ନାହିଁ । ତେଣୁ ତା ମନରେ ଭାରି ଆନନ୍ଦ । ସେ ଭାବିଲା, ତା ଜମିର ଘାସ, ତା ଜମିର ଫୁଲଫଳ ସବୁଠାରୁ ଭଲ । ଏ ଜମିକୁ କଣିବା ପୂର୍ବରୁ ସେ ଏହାକୁ କେତେ ଥର ଦେଖିଥିବ; କିନ୍ତୁ ସେତେବେଳେ ସେ ଏଥିରେ କିଛି ବିଶେଷତ୍ୱ ଦେଖିପାରୁନଥିଲା; ଏବେ ସେ ସେଇ ଜମିରେ ଗୋଟାଏ ନୂତନତ୍ୱ ଅନୁଭବ କଲା ।

( ତିନି )

ପାହୋମ ବେଶ୍ ସୁଖରେ ରହିଲା । ତା ଜୀବନଯାକ ସେହିପରି ସୁଖରେ କଟିଯାଇଥାନ୍ତା; କିନ୍ତୁ ତାହା ହୋଇ ପାରିଲା

ନାହିଁ । ଅନ୍ୟ ଗୃହୀମାନେ ତା ଜମିରେ ଗୋରୁ ଛାଡ଼ିଦେଇ ତାର ଫସଲ୍ ନଷ୍ଟ କରିଦେଲେ; ତାର ଘାସ ଚରାଇଦେଲେ । ସେ ପ୍ରଥମେ ପ୍ରଥମେ ଖୁବ୍ ଭଦ୍ରଭାବରେ ସେମାନଙ୍କୁ ଏପରି ନ କରିବା ପାଇଁ ଅନୁରୋଧ କଲା; କିନ୍ତୁ ସେଥିରେ କିଛି ଫଳ ହେଲା ନାହିଁ । ବେଳେ ବେଳେ ଗାଈଆଳମାନେ ସେମାନଙ୍କ ଗାଈଗୋରୁଙ୍କୁ ତା ଜମିରେ ପୂରାଇ ଦିଅନ୍ତି; କେତେବେଳେ ଅବା ଘୋଡ଼ାମାନେ ତା ଜମିର ଫସଲ୍ ଖାଇଯାଆନ୍ତି । ପାହୋମ ବାରମ୍ବାର ସେମାନଙ୍କୁ ତଡ଼ିଦିଏ; ତାହାର ସାଥିରେ ଏଥିପାଇଁ କଳି କରେ ନାହିଁ । ଅନେକ ଦିନ ଯାଏ ସେ ସବୁ ସହିଗଲା । ଶେଷରେ ଆଉ ସମ୍ଭାଳି ନ ପାରି କେତେ ଜଣଙ୍କ ନାମରେ କଚେରୀରେ ମକଦ୍ଦମା ଦାଏର କଲା । ଯେଉଁମାନେ ତା ଜମିରେ ଗୋରୁ ବା ଘୋଡ଼ା ପୂରାଉ ଥିଲେ ସେମାନେ ଯେ ଜାଣିଶୁଣି ପାହୋମର ଅନିଷ୍ଟ କରିବା ପାଇଁ ସେପରି କରୁଥିଲେ, ତାହା ନୁହେଁ । ପ୍ରକୃତ କାରଣ ହେଲା, ସେମାନଙ୍କର ନିଜର ଜମିର ଅଭାବ । ପାହୋମ ଯେ ଏକଥା ଜାଣିନଥିଲା, ତାହା ମଧ୍ୟ ନୁହେଁ । କିନ୍ତୁ ସେ କେତେ କ୍ଷତି ସହିବ ? ସେ ଭାବିଲା— ଏମାନଙ୍କୁ ଜବତ ନ କଲେ ଏମାନେ ମୋର ସର୍ବସ୍ୱ ନଷ୍ଟ କରି-ଦେବେ । ସେମାନଙ୍କର ଜମି ନାହିଁ ବୋଲି ମୁଁ କଣ କ୍ଷତି ସହୁଥିବି ? ନାଁ, ତା କଲେ ମୁଁ ନିଜେ ଚଳିପାରିବି ନାହିଁ । ଲୋକଗୁଡ଼ାଙ୍କୁ ଉପଯୁକ୍ତ ଶିକ୍ଷା ଦେବା ଦରକାର ।

ମକଦ୍ଦମାର ବିଚାର ହେଲା । କେତେ ଜଣଙ୍କୁ ଜରିମାନା ଦେବାକୁ ପଡ଼ିଲା । ଏହିପରି ଥରେ ନୁହେଁ, ଦୁଇ ତିନି ଥର ମକଦ୍ଦମା ହେଲା । ମାତ୍ର ଏଥିରେ ଲୋକେ ଉପଯୁକ୍ତ ଶିକ୍ଷା ପାଇବା ଦୂରେଥାଉ, ପାହୋମର ପାଖପଡ଼ିଶାମାନେ ତାର ବିରୋଧୀ ହୋଇ ଉଠିଲେ ।

ସେମାନେ କେତେ ଥର ଜାଣିଶୁଣି ପାହୋମର ଜମିରେ ଗୋରୁଗାଈ ପୂରାଇ ତାର ଫସଲ ନଷ୍ଟ କରିଦେଲେ ।

ଥରେ ଜଣେ ଗୃହୀର ନିମ୍ବଛେଲି ଦରକାର ପଡ଼ିଲା । ସେ ରାତିରେ ପାହୋମର ଜମିରୁ ପାଞ୍ଚଟା ଗଜା ନିମ୍ବଗଛ ହାଣି ତାର ଛେଲି ନେଇଗଲା । କିଛିଦିନ ପରେ ପାହୋମ ଜମିରେ ବୁଲି ବୁଲି ଦୂରରେ କଅଣ ଧଳା ହୋଇ ପଡ଼ିଥିବାର ଦେଖିଲା । ସେ ପାଖକୁ ଯାଇ ଦେଖିଲା, ସେଗୁଡ଼ିକ ହେଉଛି ନିମ୍ବଗଛର ଗଣ୍ଡି ଓ ଡାଳ । ତାର ଛେଲି କିଏ ନେଇଯାଇଛି । ଗଛର ଗଣ୍ଡିଗୁଡ଼ାକ ଶୁଖିଲା ହୋଇଛି । ପାହୋମର କ୍ରୋଧର ସୀମା ରହିଲାନାହିଁ । ସେ ଭାବିଲା, "କେଉଁଠୁ ଗୋଟାଏ ଗଛ କାଟି ପକାଇଥିଲେ ମଧ୍ୟ ସହିବାର କଥା ନୁହେଁ । କିନ୍ତୁ ଜଣେ କିଏ ଏକା ଜାଗାରୁ ପାଞ୍ଚଟାଯାକ ଗଛ ହାଣି ପକାଇଛି । କିଏ ଏ କାଣ୍ଡ କରିଛି ଜାଣିପାରିଲେ ତାକୁ ଏପରି ଶିକ୍ଷା ଦିଅନ୍ତି ଯେ ସେ ଜୀବନଯାକ ଭୁଲନ୍ତା ନାହିଁ ।"

କିଏ ଏହା କରିଛି ? ବହୁତ ଭାବି ଭାବି ସେ ସ୍ଥିର କଲା—ଏ ନିଶ୍ଚୟ ସାଇମନର କାମ—ଆଉ କାହାର ନୁହେଁ । ପାହୋମ ସାଇମନର ଘରକୁ ଯାଇ ଗଛ ଛେଲିର କିଛି ସଙ୍କେତ ପାଇଲାନାହିଁ । କେବଳ ଦୁହିଙ୍କ ଭିତରେ କଳି ହେଲା । ସାଇମନ ତା ସଙ୍ଗେ କଳି କରିବାରୁ ତାର ଧାରଣା ହେଲା, ସାଇମନହିଁ ତାର ଅନିଷ୍ଟ କରିଛି । ସେ କଚେରିରେ ତା ନାମରେ ଏକ ମକଦ୍ଦମା ଦାଏର କଲା । ସାଇମନକୁ କଚେରିରୁ ତଲବ ହେଲା । ଦୁଇଦିନ ବିଚାର ଚାଲିଲା । ଶେଷରେ ବିଚାରକମାନେ ପ୍ରମାଣ ଅଭାବରୁ ସାଇମନକୁ ଖଲାସ କରିଦେଲେ । ପାହୋମ ଭାବିଲା, ତା ପ୍ରତି ଅନ୍ୟାୟ କରାଯାଇଛି । ସାଇମନ ତାର ଜମିରୁ ଚୋରି କଲା; ସେ ଦୋଷୀ । ବିଚାରକମାନେ ତାକୁ ଛାଡ଼ିଦେଇ ଦୋଷୀକୁ ସାହାଯ୍ୟ କରୁଛନ୍ତି ।

ପାହୋମ କ୍ରୋଧରେ ବିଗୁରିପଡ଼ିଙ୍କୁ କହିଲା, "ତୁମେ ଚୋରଙ୍କଠାରୁ ଟଙ୍କା ଖାଉଛ । ତୁମେ ସାଧୁଲୋକ ହୋଇଥିଲେ ଚୋରଙ୍କୁ ନିର୍ଦ୍ଦୋଷ କହି ଛାଡ଼ି ଦେଇ ନଥାନ୍ତ ।"

ପାହୋମର ଏହି ମକଦ୍ଦମାର ଏତିକି ଫଳ ହେଲା ଯେ, କେବଳ ସାଇମନ ଓ ବିଗୁରିଙ୍କମାନେ ନୁହନ୍ତି, ସହରର ସମସ୍ତେ ତାର ଶତ୍ରୁ ହୋଇ ପଡ଼ିଲେ । ତା ମନରେ ଟିକିଏ ହେଲେ ଶାନ୍ତି ରହିଲା ନାହିଁ ।

ଏହି ସମୟରେ ସେଠାର ଚାଷୀମାନେ ଶୁଣିବାକୁ ପାଇଲେ ଯେ, ଅନେକ ଲୋକ ରୁଷିଆର ସେ ଅଞ୍ଚଳ ଛାଡ଼ିଦେଇ ଅନ୍ୟଆଡ଼େ ବସବାସ କରିବାକୁ ଚାଲିଯାଉଅଛନ୍ତି ।

ପାହୋମ ବିଚାରିଲା—"ଆମ ଗ୍ରାମର କେତେକ ଲୋକ ସେଠାକୁ ନିଶ୍ଚୟ ଚାଲିଯିବେ । ତାହାହେଲେ ଆମମାନଙ୍କର ଚଳିବାକୁ ଅସୁବିଧା ହେବନାହିଁ । ମୁଁ କେତେ ଜଣଙ୍କର ଜମି କିଣି ମୋର ଚକଟା ଆଉ ଟିକିଏ ବଡ଼ କରିଦେବି । ବର୍ତ୍ତମାନ ମୋର ଅଳ୍ପ ଜମି ଥିବାରୁ ଚଳିବାରେ ଅସୁବିଧା ହେଉଛି । ବେଶୀ ଜମି ହେଲେ ମୁଁ ଅଧିକ ସୁଖରେ ଚଳିପାରିବି । ଯେଉଁମାନେ ଏଠାରୁ ଚାଲିଯିବେ ଯାଆନ୍ତୁ । ମୋର ଅନ୍ୟଆଡ଼େ ଯିବା ଦରକାର ହେବ-ନାହିଁ । ବରଂ ସେମାନେ ଗଲେ ମୋର ଲାଭ ।"

ଦିନେ ପାହୋମ ଘରେ ବସିଛି, ଏହି ସମୟରେ ଜଣେ ଚାଷୀ ଗାଁ ଦାଣ୍ଡରେ ଯାଉ ଯାଉ ସେଠାରେ ଅଟକିଗଲା । ପାହୋମ ଲୋକଟିକୁ ସେଦିନ ରାତିଟି ନିଜ ଘରେ ରଖି ଖାଇବାକୁ ଦେଲା । ଦୁହେଁ କଥାବାର୍ତ୍ତା ହେଉ ହେଉ ଲୋକଟି କେଉଁଠାରୁ ଆସୁଛି ବୋଲି ପାହୋମ ପଚାରିଲା । ସେ ଉତ୍ତର ଦେଲା, "ମୁଁ ଭଲ୍‌ଗା

ନଦୀର ଆରପାଖେ ଗୋଟିଏ ଜାଗାରେ କାମ କରୁଥିଲ । ସେଇଠାରୁ ଅସୁଛି ।" କଥାବାର୍ତ୍ତା ହେଉ ହେଉ ଲୋକଟି କହିଲା ଯେ ଅନେକ ଲୋକ ସେ ଅଞ୍ଚଳରେ ବସବାସ କରିବାକୁ ଯାଉଛନ୍ତି । ତା ଗାଁଅର କେତେକ ଲୋକ ମଧ୍ୟ ଯାଇ ସେଠାରେ ରହିଲେଣି । ସେମାନେ ଗୋଟିଏ ସମିତି ଗଢ଼ିଛନ୍ତି । ପ୍ରତ୍ୟେକ ସଭ୍ୟକୁ ପଚିଶ ଏକର ଲେଖାଏଁ ଜମି ଦିଆଯାଇଅଛି । ସେଠାର ଜମି ଖୁବ୍ ଉର୍ବର । ଗହମଗଛଗୁଡ଼ାକ ଘୋଡ଼ାଏ ଉଚ୍ଚ ହୁଏ । ବହୁତ ଫଳ ଫଳେ । ଜଣେ ଚାଷୀ ଶୂନ୍ୟ ହାତରେ ସେଠାକୁ ଯାଇଥିଲା । ନିଜ ଦେହ ମେହନତରେ ଏଥିମଧ୍ୟରେ ସେ ଛଅଟି ଘୋଡ଼ା ଓ ଯୋଡ଼ାଏ ଗାଈ କିଣିସାରିଲାଣି ।

ଏ ସବୁ ଶୁଣି ପାହୋମର ଲୋଭ ହେଲା । ସେ ଭାବିଲା, "ଅନ୍ୟ ଜାଗାରେ ଏତେ ସୁବିଧାରେ ଚଳିହେବ । ତାହାହେଲେ ମୁଁ ଏ ଗାଁରେ ପଡ଼ି ରହିବି କାହିଁକି ? ମୋର ଏ ଘର ଓ ଜମି ବିକି ଦେଇ ସେଇ ଟଙ୍କାରେ ସେଠି ନୂଆ ଘର, ନୂଆ ଖମାର ନ କରିବି କାହିଁକି ? ଏଠାରେ ସ୍ଥାନାଭାବ ହେତୁ ସବୁବେଳେ ହଇରାଣ ହେବାକୁ ପଡ଼ୁଛି । ଲୋକଟି ଯାହା କହୁଛି, ସେଥିରୁ ମନେହୁଏ, ସେ ଜାଗାଟା ଖୁବ୍ ଭଲ । ତଥାପି ଏ ଜାଗା ଛାଡ଼ିବା ଆଗରୁ ମୁଁ ନିଜେ ସେଠାକୁ ଯାଇ ସବୁ ହାଲ ବୁଝି ଆସିବା ଉଚିତ ।"

ଗ୍ରୀଷ୍ମଋତୁ ଆସିବାରୁ ପାହୋମ ସେଠାକୁ ଯିବାପାଇଁ ବାହାରିଲା । କିଛି ଦିନ ପରେ ସେ ଭଲ୍‌ଗା ନଦୀ ପାଖରେ ପହଞ୍ଚିଲା । ଗୋଟିଏ ଷ୍ଟିମରରେ ବସି ସେ ଭଲ୍‌ଗା ନଦୀରେ ସମାରା ସହର ପର୍ଯ୍ୟନ୍ତ ଗଲା । ସେଠାରୁ ତାକୁ ତିରିଶ ମାଇଲ ବାଟ ଚାଲିବାକୁ ହେଲା । ଶେଷରେ ସେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା । ଦେଖିଲା, ଯାହା ସେ ଶୁଣିଥିଲା ସେସବୁ ସତ । ସମିତି ପ୍ରତ୍ୟେକ

ଋଷୀଙ୍କୁ ପଚଶ ଏକର ଲେଖାଏଁ ଜମି ଦେଇଥିଲେ । ତାହାଛଡ଼ା ଯାହାର ଶକ୍ତି ଥିଲା ସେ ଏକରକୁ ଟଙ୍କାଏ ଲେଖାଏଁ ଦେଇ ଯେତେ ଇଚ୍ଛା ସେତେ ଜମି କିଣିପାରୁଥିଲେ । ସବୁ ଜମି ବେଶ୍ ଭଲ; ଫସଲ ଖୁବ୍ ଭଲ ହୁଏ ।

ପାହୋମ ଯାହା ବୁଝିବାକୁ ଆସିଥିଲା ସବୁ ବୁଝିଲା । ତାର ସବୁ ସନ୍ଦେହ ତୁଟିଗଲା । ସେ ଘରକୁ ଫେରିଯାଇ ନିଜର ଜମି, ଘର ଓ ଗୋରୁଗାଈ ବିକିବାରେ ଲାଗିଲା । ସବୁ ଟଙ୍କା ଠୁଳ କରି ବସନ୍ତ ଋତୁ ଆରମ୍ଭରେ ସେ ପିଲା କୁଟୁମ୍ବ ଧରି ସେହି ନୂଆ ସ୍ଥାନକୁ ବାହାରିଲା ।

( ଚାରି )

ପାହୋମ ପରିବାର ସହିତ ପହଞ୍ଚି ସଙ୍ଗେ ସଙ୍ଗେ ସମିତିରେ ସଭ୍ୟ ହୋଇଗଲା । ସମିତି ତାକୁ ଶହେ ପଚଶ ଏକର ଋଷ ଜମି ଓ ତାର ସଂଲଗ୍ନ ଘର ପଡ଼ିଆ ଦେଲା । ସେ ଗ୍ରାମରେ ନିଜ ଘର ତିଆରି କଲା, ଗୋରୁଗାଈ କିଣିଲା । ପୂର୍ବେ ତାର ତିରିଶ ଏକର ମାତ୍ର ଜମି ଥିଲା । ଏବେ ଏଠାରେ ତାର ପ୍ରାୟ ତିନିଗୁଣ ଜମି ପାଇଲା । ଜମି ମଧ୍ୟ ଖୁବ୍ ସରସ । ତାର ସମ୍ପତ୍ତିର ମୂଲ୍ୟ ଆଗ ସମ୍ପତ୍ତିର ଦଶଗୁଣ ହୋଇଗଲା । ଏବେ ଋଷ ପାଇଁ କିଆରି, ଗୋରୁଙ୍କ ଘାସ ପାଇଁ କିଆରି, ଜମି ଯଥେଷ୍ଟ । ସେ ଯେତେ ଇଚ୍ଛା ସେତେ ଗୋରୁ ଗାଈ ରଖିଲେ କିଛି ଅଭାବ ହେବ ନାହିଁ ।

ନୂଆ ଘର କରି ରହିବା, ଜମି କିଣିବା ଓ ଋଷବାସ ବ୍ୟବସ୍ଥା କରିବା ଏ ସବୁରେ ମାତି ରହି ପାହୋମ ପ୍ରଥମେ ଭାରି ଆନନ୍ଦ ଅନୁଭବ କରୁଥିଲା । ମାତ୍ର କିଛି ଦିନ ପରେ ତାର ମନେହେଲା—

ଏଠାରେ ମଧ୍ୟ ତାର ଯଥେଷ୍ଟ ଜମି ହେଲା ନାହିଁ । ଅମିତ ତାକୁ ଯେଉଁ ଜମି ଦେଇଥିଲା, ସେଥିରେ ସେ ପ୍ରଥମ ବର୍ଷ ଗହମ ଚାଷ କଲା । ଫସଲ ଭଲ ହେଲା । ପରବର୍ଷ ଗହମ ଚାଷ କରିବାକୁ ତାର ଇଚ୍ଛା, କିନ୍ତୁ ଯେଉଁ ଜମିରେ ବର୍ଷେ ଗହମ ଚାଷ ହୋଇଛି ସେଥିରେ ତା ପର ବର୍ଷ ଗହମ ଚାଷ କରି ହେବ ନାହିଁ । ଅନ୍ତତଃ ବର୍ଷେ ଦୁଇବର୍ଷ ସେ ଜମିକୁ ଛାଡ଼ି ଦେବାକୁ ହେବ । କିନ୍ତୁ ଚାଷ ପାଇଁ ଆଉ ଜମି କାହିଁ ? ଠିକ୍ ଏହି କାରଣରୁ ଅନେକ ଚାଷୀ ଅଧିକ ଜମି ଖୋଜୁଥିଲେ । ଫଳରେ ସେମାନଙ୍କ ଭିତରେ ବିବାଦ ଆରମ୍ଭ ହେଲା । ଯେଉଁମାନଙ୍କ ପାଖରେ ବେଶୀ ଧନ ଥିଲା, ସେମାନେ ଗହମ ଚାଷ କରିବାକୁ ଚାହୁଁଥିଲେ । ଗରିବ ଲୋକେ ବେପାରୀ-ମାନଙ୍କଦ୍ୱାରା ଜମି ବିକି ଖରିଦ କରାଇ କିଛି ପଇସା ଅର୍ଜୁଥିଲେ । ପାହୋମ ଅଧିକ ଜମିରେ ଚାଷ କରିବା ପାଇଁ ଜଣେ ବେପାରୀଠାରୁ ବର୍ଷକ ପାଇଁ କିଛି ଜମି ଖଜଣାରେ ନେଲା । ଏବର୍ଷ ଚାଷରୁ ସେ ପ୍ରଚୁର ଗହମ ଅମଦାନି କଲା । ମାତ୍ର ଏ ଜମିର ଗୋଟିଏ ଅସୁବିଧା ଥିଲା । ଜମିଟି ତାର ଗ୍ରାମଠାରୁ ପ୍ରାୟ ଦଶମାଇଲ ଦୂରରେ । ତେଣୁ ତାକୁ ଫସଲ କାଟି ଏତେ ଦୂର ନେବାକୁ ପଡ଼ିଲା । କିଛି ଦିନ ପରେ ପାହୋମ ଦେଖିଲା, କେତେ ଜଣ ଜମି ବେପାରୀ ସମି-ତିର ଗ୍ରାମଠାରୁ ଦୂରରେ ନିଜ ନିଜର ଚାଷଜମିରେ ଖମାର କରି ଖୁବ୍ ଧନୀ ହୋଇଅଛନ୍ତି । ତେଣୁ ସେ ମନେକଲା, "ମୁଁ ଯେବେ ଅଲଗା କରି ନିଜର ଖଣ୍ଡିଏ ଜମି ଦୂରରେ କିଣି ଖମାରଟିଏ କରିବି, ତେବେ ମୋ ଭାଗ୍ୟ ବଦଳିଯିବ । ପଇସାକୁ ପଇସା ହେବ; ଆଉ କିଛି ଅସୁବିଧା ରହିବ ନାହିଁ ।" ଖଜଣା ଦେଇ ପରର ଜମି ଚାଷ କରିବା ପରିବର୍ତ୍ତେ ନିଜର ଅଲଗା ଜମି କିଣିବା କଥା ତା ମନରେ ବାରମ୍ବାର ଉଦିତ ହେଲା ।

ତିନି ବର୍ଷ ଯାଏ ବାର୍ଷିକ ଖଜଣାରେ ଜମି ନେଇ ସେ ଗହମ ଚାଷ କଲା । ଏ ତିନି ବର୍ଷ ଯାକ ପାଗ ଭଲ ହେଲା । ତେଣୁ ସେ ପ୍ରଚୁର ଗହମ ଅମଳ କରି କିଛି ଟଙ୍କା ସଞ୍ଚୟ କଲା । ମାତ୍ର ତାର ମନରେ ଶାନ୍ତି ଆସିଲା ନାହିଁ । ପ୍ରତିବର୍ଷ ଚାଷ ପାଇଁ ପରଠାରୁ ଜମି ଆଣି, ଖଜଣା ଦେଇ ଦେଇ ସେ ବିରକ୍ତ ହୋଇଗଲା । ଭଲ ଜମି ପାଇଁ ଚାଷୀମାନେ ଦର ବଢ଼ାବଢ଼ି ହେଉଥିଲେ । ଯେ ଆଗ ନେଇ-ପାରିଲା ସେ ଭଲ ଜମି ପାଇଲା । ଯେ ପଛକୁ ରହିଗଲା, ତା ଭାଗ୍ୟରେ ନୀରସ ଜମି ପଡ଼ିଲା । ତୃତୀୟ ବର୍ଷ ପାହୋମ ଜଣେ ବେପାରୀ ସଙ୍ଗେ ଭାଗ ହୋଇ କେତେକ ଚାଷୀଙ୍କଠାରୁ ଖଣ୍ଡିଏ ଜମି ଖଜଣାରେ ଆଣିଲା । ଜମି ଚାଷ ହେଲା ପରେ ଗୋଟାଏ କଳି ଲାଗିଲା ଓ ଚାଷୀ-ମାନେ ମକଦ୍ଦମା କଲେ । ଏହା ଫଳରେ ସେ ବର୍ଷ ଜମି ଖଣ୍ଡିକ ବୁଣା ହୋଇ ପାରିଲା ନାହିଁ ।

ପାହୋମ ବିଚାରି କଲା, "ଜମି ଖଣ୍ଡିକ ମୋର ନିଜର ହୋଇଥିଲେ, ଗୋଳମାଳ ହୋଇ ନ ଥାନ୍ତା କି ମୁଁ ଏତେ କ୍ଷତିରେ ପଡ଼ି ନ ଥାନ୍ତି ।"

ସେହି ଦିନଠାରୁ ପାହୋମ କିଣିବା ପାଇଁ ଜମି ଖୋଜିଲା । ଦିନେ ତାର ଜଣେ ଚାଷୀ ସହିତ ଦେଖା ହେଲା । ସେହି ଚାଷୀ ତେର ହଜାର ଏକର ଜମି କିଣିଥିଲା; ମାତ୍ର ଗୋଟାଏ ଅସୁବିଧାରେ ପଡ଼ି ସବୁଯାକ ଜମି ଶସ୍ତାରେ ବିକି ଦେବାକୁ ବସିଥିଲା । ପାହୋମ ଏହା କିଣିବା ବିଷୟରେ କଥାବାର୍ତ୍ତା କଲା । ଜମିର ଦର ପନ୍ଦର ଶହ ଟଙ୍କା ଛୁଟିଲା; ମାତ୍ର କଥା ହେଲା ଯେ କିଛି ଟଙ୍କା ବାକୀ ରହିବ ଓ ସେ ଟଙ୍କା ପାହୋମ ପରେ ସୁଝିଦେବ । କଥାଟା ପକ୍କା ହେବାକୁ ଯାଉଛି ଏହି ସମୟରେ ଦିନେ ଜଣେ

ବେପାରୀ ତାର ଘୋଡ଼ାକୁ ଖୁଆଇବା ପାଇଁ ପାହୋମର ଘର ପାଖେ ରହିଲା । ପାହୋମ ତାକୁ ଗୃହା ଖାଇବା ପାଇଁ ଡାକିଲା । ଗୃହା ଖାଉ ଖାଉ ଦୁହିଁଙ୍କ ଭିତରେ ଅନେକ କଥା ପଡ଼ିଲା । ବେପାରୀ ବଶ୍କିରମାନଙ୍କ ରାଜ୍ୟରୁ ଆସୁଛି ବୋଲି କହିଲା । ତାହାଠାରୁ ପାହୋମ ଜାଣିଲା, ସେ ସେହି ରାଜ୍ୟରେ ମୋଟେ ହଜାରେ ଟଙ୍କାକୁ ତେର ହଜାର ଏକର ଜମି କିଣିଛି । ଏହା ଶୁଣି ପାହୋମର ଆଗ୍ରହ ବଢ଼ିଲା ଓ ସେ ରାଜ୍ୟ ବିଷୟରେ ସେ ନାନା ପ୍ରଶ୍ନ ପଚାରିଲା । ବେପାରୀ କହିଲା, "ସେ ରାଜ୍ୟରେ ଜମି ପାଇବା ଆଦୌ କଷ୍ଟ ନୁହେଁ । ବଶ୍କିର ସରଦାରମାନଙ୍କ ସଙ୍ଗରେ ବନ୍ଧୁତା କରି-ପାରିଲେ ହେଲା । ମୁଁ ସେମାନଙ୍କୁ ଟିଣେ ଗୃହା, କେତେକ ରେଶମ ପୋଷାକ ଓ କିଛି ସାଜସଜ୍ଜାର ଉପକରଣ ଦେଇଥିଲି । କେତେ ଜଣଙ୍କୁ କିଛି ମଦ ମଧ ପିଇବାକୁ ଦେଇଥିଲି । ଏ ସବୁରେ ମୋର ଶହେ ଟଙ୍କା ଖର୍ଚ୍ଚ ହୋଇଥିବ । ଏହା ଫଳରେ ମୁଁ ହଜାରେ ଟଙ୍କାକୁ ତେର ହଜାର ଏକର ଜମି ପାଇଛି । ଏକରକୁ ପ୍ରାୟ ଅଠ ପଇସା ପଡ଼ିଲା ।" ପାହୋମ ଆଶ୍ଚର୍ଯ୍ୟ ହୋଇଗଲା । ଜମିର ମୂଲ୍ୟ ଏତେ ଶସ୍ତା ହୋଇଥିବ ବୋଲି ସେ ବିଶ୍ୱାସ କରି ପାରିଲା ନାହିଁ । ତାର ସନ୍ଦେହ ଦୂର କରିବା ପାଇଁ ବେପାରୀ ଜମି ଖରିଦର କବଲା ଖଣ୍ଡିକ ପକେଟରୁ କାଢ଼ି ଦେଖାଇଲା । ସେ କହିଲା, "ମୋର ଜମି ହେଉଛି ଗୋଟିଏ ନଈକୂଳରେ । ଜମିଟା ଖୁବ୍ ଉର୍ବର । ଆଗରୁ ଚାଷ ନ ହୋଇ ପଡ଼ିଆ ପଡ଼ିଥିଲା ।"

ପାହୋମର ଅନ୍ୟାନ୍ୟ ପ୍ରଶ୍ନର ଉତ୍ତରରେ ବେପାରୀ କହିଲା, "ସେ ରାଜ୍ୟରେ ଏତେ ଜମି ପଡ଼ିଛି ଯେ ବର୍ଷେକାଳ ବୁଲୁଥିଲେ ବି ସବୁ ଦେଖି ପାରିବ ନାହିଁ । ଏସବୁ ହେଉଛି ବଶ୍କିରମାନଙ୍କର ।

ସେମାନେ ଅତି ନିର୍ବୋଧ ସରଳ ଲୋକ; ଛଳକପଟ କିଛି ଜାଣନ୍ତି ନାହିଁ । ଜଣେ ଚେଷ୍ଟା କଲେ ମାଗଣାରେ ମାଇଲ ମାଇଲ ଜମି ପାଇପାରିବ ।

ପାହୋମ ମନେ ମନେ ଭାବିଲା, "ତେବେ ମୁଁ ହଜାରେ ଟଙ୍କା ଖରଚ କରି ତେରସହ ଏକର ଜମି କିଣିବି କାହିଁକି ? ସେଇ ଟଙ୍କାରେ ମୁଁ ବଶ୍‌କିରମାନଙ୍କଠାରୁ ତାର ଦଶଗୁଣ ଜମି ପାଇ ପାରିବି ।"

## ( ପାଞ୍ଚ )

ବଶ୍‌କିରମାନଙ୍କ ଦେଶକୁ କିପରି କେଉଁବାଟେ ଯିବାକୁ ହେବ ତାହା ପାହୋମ ବେପାରୀଠାରୁ ବୁଝିଲା । ବେପାରୀ ଚାଲିଯିବା ପରେ ସେ ନିଜେ ସେଠାକୁ ଯିବାପାଇଁ ପ୍ରସ୍ତୁତ ହେଲା । ତାର ଅନୁପସ୍ଥିତିରେ କିପରି ଗୃହବାସର ବ୍ୟବସ୍ଥା କରିବାକୁ ହେବ ସେ ବିଷୟରେ ସ୍ତ୍ରୀକୁ ପରାମର୍ଶ ଦେଇ ସଙ୍ଗରେ ଜଣେ ମାତ୍ର ଚାକର ନେଇ ସେ ବାହାରିଲା । ବାଟରେ ଗୋଟିଏ ସହରରୁ ସେ ଟିକିଏ ଚାହା, କିଛି ମଦ ଓ ଉପହାର ଦେବାପାଇଁ ଆଉ କେତେକ ଜିନିଷ କିଣିଲା । ସାତଦିନରେ ତିନିଶହ ମାଇଲ ଚାଲି ଚାଲି ସେ ବଶ୍‌କିରମାନଙ୍କ ରାଜ୍ୟରେ ପହଞ୍ଚିଲା । ବଶ୍‌କିରମାନେ ତମ୍ବୁରେ ବାସ କରୁଥିଲେ । ପାହୋମ ଦେଖିଲା, ବେପାରୀ ଯାହା ଯାହା କହିଥିଲା, ସବୁ ଅକ୍ଷରେ ଅକ୍ଷରେ ସତ । ଗୋଟିଏ ନଈକୂଳରେ ପଡ଼ିଆ ଜାଗାରେ ସେମାନେ ତମ୍ବୁ ପକାଇ ରହୁଥିଲେ । ସେମାନେ ଜମି ଚାଷ କରୁ ନଥିଲେ କି ରୁଟି ଖାଉ ନ ଥିଲେ । କେବଳ ପଲ ପଲ ଗୋରୁ ଗାଈ ଓ ଘୋଡ଼ା ସେମାନଙ୍କ ଘରପାଖ ପଡ଼ିଆରେ ଚରୁଥିଲେ । ତମ୍ବୁ ପଛ ପଟେ

ଅନେକ ଘୋଡ଼ା ଚୁଆ ଧକା ହୋଇଥିଲେ । ବଶ୍କିରମାନେ କୁଧିଆଳ ଘୋଡ଼ୀମାନଙ୍କୁ ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ସେଠାକୁ ଆଣି ସେମାନଙ୍କୁ ଦୁହୁଁଥିଲେ । ପୁରୁଷମାନେ ଦୁଧ ଦୁହିଁ ସ୍ତ୍ରୀମାନଙ୍କୁ ଦେଉଥିଲେ ଓ ସେମାନେ ସେଥିରୁ ଲୁଧନ୍ତ ଛେନା ଓ ଏକ ପ୍ରକାର ମଦ୍ୟ ପ୍ରସ୍ତୁତ କରୁଥିଲେ । ମାଂସ ଓ ଛେନା ଖାଇ, ମଦ ଓ ଗୃହା ପିଇ ପୁରୁଷମାନେ ଆନନ୍ଦରେ ଦିନ କଟାଉଥିଲେ । ବେଳେ ବେଳେ ବଂଶୀ ବଜାଉଥିଲେ । ଲୋକଗୁଡ଼ିକ ଖୁବ୍ ବଳିଷ୍ଠ ଓ ଆମୋଦପ୍ରିୟ । ସେମାନେ କୌଣସି ପରିଶ୍ରମ କରିବାର ଦେଖାଯାଉ ନ ଥିଲା । ସେମାନଙ୍କର ବ୍ୟବହାର ଅତି ସରଳ । ଏହି ଅଞ୍ଚଳର ଭାଷା ରୁଷୀୟ ଭାଷାଠାରୁ ଭିନ୍ନ । ତେଣୁ ସେମାନେ ରୁଷୀୟଭାଷା କହିପାରୁ ନ ଥିଲେ । ସେମାନେ ଅତି ଦୟାଳୁ ବୋଲି ଜଣାପଡ଼ୁଥିଲା ।

ପାହୋମକୁ ଦେଖିଲାମାତ୍ରେ ସେମାନେ ତମ୍ବୁରୁ ବାହାରି ପଡ଼ି ତା ଚାରିପାଖେ ବେଢ଼ିଗଲେ । ତା ସହିତ କଥାବାର୍ତ୍ତା ହେବା ପାଇଁ ଜଣେ ଦୋଭାଷୀକୁ ଖୋଜି ଆଣିଲେ । ସେ ପାହୋମର କଥା ବଶକିରମାନଙ୍କୁ ଓ ବଶ୍କିରମାନଙ୍କ କଥା ପାହୋମକୁ ବୁଝାଇ ଦେଲା । କିଛି ଜମି କିଣିବା ଉଦ୍ଦେଶ୍ୟରେ ଆସିଛି ବୋଲି ପାହୋମ ଜଣାଇଲା । ଏହା ଶୁଣି ବଶ୍କିରମାନେ ଆନନ୍ଦ ପ୍ରକାଶ କଲେ । ସେମାନେ ପାହୋମକୁ ଗୋଟିଏ ବଡ଼ ତମ୍ବୁକୁ ଡାକିନେଲେ । ତାକୁ ଗୋଟିଏ ଭଲ ଆସନରେ ବସାଇ ସେମାନେ ତାକୁ ବେଢ଼ି ବସିଲେ । ସେମାନେ ପାହୋମକୁ କିଛି ଛେନା ଓ ମେଣ୍ଢାମାଂସ ଖାଇବାକୁ ଦେଲେ । ଭୋଜନ ପରେ କିଛି ମଦ ପିଇବାକୁ ଦିଆଗଲା । ଏହାପରେ ପାହୋମ ତାର ଉପହାରକୁ ସେମାନଙ୍କ ଭିତରେ ବାଣ୍ଟି ଦେଲା । ବଶ୍କିରମାନେ ଏଥିରେ ଖୁବ୍ ଆନନ୍ଦିତ ହେଲା ପରି ଜଣାଗଲା ।

ଏହା ପରେ ସେମାନେ ନିଜ ଭିତରେ କିଛି ସମୟ ଯାଏ କଥାବାର୍ତ୍ତା ହେଲେ । ପାହୋମ ସେଥିରୁ କିଛି ବୁଝି ପାରିଲା ନାହିଁ । ଦୋଭାଷୀ ବଶ୍‌କିରମାନଙ୍କ ଆଦେଶରେ ସେମାନଙ୍କର ମତ ଜଣାଇ ପାହୋମକୁ କହିଲା, "ବଶ୍‌କିରମାନେ ତୁମର ବ୍ୟବହାରରେ ସନ୍ତୋଷ ପ୍ରକାଶ କରୁଅଛନ୍ତି । ଅତିଥିଭାବରେ ତୁମକୁ ସେମାନେ ଯଥାସାଧ୍ୟ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରିବେ । ତୁମର ଉପହାର ଗ୍ରହଣ କରି ସେମାନେ ଆନନ୍ଦିତ । ତୁମେ କେଉଁ ଜିନିଷ ନେବାକୁ ବିଶେଷ ଭାବରେ ଆଗ୍ରହୀ, ତାହା କହିଲେ ସେମାନେ ସେ ଜିନିଷ ଦେବେ ।"

ପାହୋମ ଉତ୍ତର କଲା, "ଏଠାରେ ଯେତେ ଜିନିଷ ଦେଖୁଛି, ସେଥିମଧ୍ୟରେ ତୁମମାନଙ୍କର ଜମିହିଁ ମୋତେ ସବୁଠାରୁ ଅଧିକ ଆନନ୍ଦ ଦେଉଛି । ଆମ ଦେଶରେ ବହୁତ ଲୋକ, ଜମି ଅଳ୍ପ । ପୁଣି ସେ ଜମିରେ ଏବେ ବେଶି ଫସଲ ହେଉନାହିଁ । ତୁମମାନଙ୍କର ପ୍ରଚୁର ଜମି ରହିଛି ଓ ଏ ଜମିରେ ବହୁତ ଫଳୁଛି । ଏଭଳି ଉତ୍କୃଷ୍ଟ ଜମି ଆମ ରାଜ୍ୟରେ ଦେଖିବାକୁ ମିଳିବ ନାହିଁ ।"

ଦୋଭାଷୀ ପାହୋମର କଥା ବଶ୍‌କିରମାନଙ୍କୁ ବୁଝାଇଦେଲା । ସେମାନେ କିଛି ସମୟ ଯାଏ ଆପଣା ଆପଣା ଭିତରେ କଅଣ କଥା-ଭାଷା ହେଲେ, ପାହୋମ ବୁଝି ପାରିଲା ନାହିଁ । କିନ୍ତୁ ସେମାନଙ୍କର ହସ ଓ ଢଙ୍ଗରୁ ଏତିକି ବୁଝିଲା ଯେ ବଶ୍‌କିରମାନେ ତା କଥା ଶୁଣି ବେଶ୍ କୌତୁକ ଅନୁଭବ କରୁଅଛନ୍ତି । ଦୋଭାଷୀ ସେମାନଙ୍କର ମତ ପ୍ରକାଶ କରି ପାହୋମକୁ କହିଲା, "ତୁମର ଉପହାର ପରି-ବର୍ତ୍ତିରେ ସେମାନେ ତୁମର ଇଚ୍ଛା ଅନୁସାରେ ଜମି ଦେବାକୁ ପ୍ରସ୍ତୁତ । ତୁମେ କେଉଁଠାରୁ କେତେ ଜମି ନେବାକୁ ଚାହଁ, ତାହା ଦେଖାଇ ଦେଲେ ହେଲା ।"

ଏହା ପରେ ବଶ୍‌କରମାନଙ୍କ ଭିତରେ କିଛି ସମୟ ଧରି ଯୁକ୍ତିତର୍କ ଚାଲିଲା । ପାହୋମ ଏଥିର କାରଣ ପଚାରିବାରୁ ଦୋଭାଷୀ କହିଲା, "ବଶ୍‌କିରମାନଙ୍କ ଭିତରୁ କେତେକଙ୍କର ମତ ଯେ ଏ ବିଷୟରେ ସେମାନଙ୍କ ସରଦାରଙ୍କ ପରାମର୍ଶ ନେବା ଉଚିତ; ତାଙ୍କ ଅନୁପସ୍ଥିତିରେ କିଛି କରିବା ଠିକ୍ ହେବ ନାହିଁ । ଅନ୍ୟ କେତେକେ କହନ୍ତି ଯେ ସରଦାରଙ୍କ ଅସିବାଯାଏ ଅପେକ୍ଷା କରିବା ଅନାବଶ୍ୟକ ।"

## ( ଛଅ )

ବଶ୍‌କିରମାନଙ୍କ ମଧ୍ୟରେ ଏହିପରି ଆଲୋଚନା ଚାଲିଥିଲା ବେଳେ ଜଣେ ଭଦ୍ରବ୍ୟକ୍ତି ଉପସ୍ଥିତ ହେଲେ । ତାଙ୍କ ମୁଣ୍ଡରେ ଗୋଟିଏ ଲମ୍ବ ପଶମ ଟୋପି ଥିଲା । ବଶ୍‌କିରମାନେ ପାଟିତୁଣ୍ଡ ବନ୍ଦ କରି ଛିଡ଼ା ହୋଇଗଲେ । ଦୋଭାଷୀ ପାହୋମକୁ କହିଲା, "ଏଇ ଭଦ୍ରଲୋକ ହେଉଛନ୍ତି ସେମାନଙ୍କର ସରଦାର ।"

ପାହୋମ ସଙ୍ଗେ ସଙ୍ଗେ ଦଉଡ଼ିଯାଇ ଗୋଟିଏ ସୁନ୍ଦର ରେଶମକୋଟ ଓ ଗୋଟିଏ ଟିଣ ଚାହା ନେଇ ସରଦାରଙ୍କୁ ଭେଟି-ଦେଲା । ସରଦାର ଏହି ଉପହାର ଗ୍ରହଣ କରି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଗୋଟିଏ ସୁସଜ୍ଜିତ ଆସନରେ ବସିଲେ । ବଶ୍‌କିରମାନେ ତାଙ୍କୁ କେତେକ କଥା କହିଲେ । ତାହା ଶୁଣି ସେ ସେମାନଙ୍କୁ ଚୁପ୍ ରହିବାକୁ ଆଦେଶ ଦେଲେ ଓ ପାହୋମକୁ ଡାକି ରୁଷୀୟ ଭାଷାରେ କହିଲେ, "ଅଚ୍ଛା, ତୁମେ ଜମି ନେବାକୁ ଚାହଁ । ତା ଦିଆଯିବ । ଆମର ଯଥେଷ୍ଟ ଜମି ଅଛି । ତୁମେ କେଉଁଠାରୁ କେତେ ଜମି ନେବ ସ୍ଥିର କର ।"

ପାହୋମ ମନେ ମନେ ଚିନ୍ତା କଲା—ଯେତେ ଇଚ୍ଛା ସେତେ ଜମି ନେବି କିପରି ? ଜମିଟା ମୋର ହେବାପାଇଁ ଦଲିଲ ଲେଖା ହେବା ଦରକାର । ତା ନ ହେଲେ ଏମାନେ ଆଜ କହୁଛନ୍ତି—ଏ ଜମି ତୁମର, କାଲି ମନକଲେ ମୋଠାରୁ ପୁଣି ଛଡ଼ାଇ ନେଇ-ପାରନ୍ତି ।

ସେ ସରଦାରଙ୍କୁ କହିଲା, "ଆପଣ ଯାହା କହିଲେ ସେଥିପାଇଁ ଅଶେଷ ଧନ୍ୟବାଦ । ଆପଣମାନଙ୍କର ଅପର୍ଯ୍ୟାପ୍ତ ଜମି ପଡ଼ିରହିଛି । ମୁଁ ସେଥିରୁ ସାମାନ୍ୟ କିଛି ନେବାକୁ ଚାହେଁ । କିନ୍ତୁ ସେତକ ଯେପରି ମୋର ହୋଇ ରହିବ, ସେ ବିଷୟରେ ମୁଁ ନିଶ୍ଚିନ୍ତ ହେବାକୁ ଚାହେଁ । ଯାହା ଦେବେ ତାକୁ ମାପି ମୋ ନାମରେ ଲେଖାପଢ଼ା କରି ଦେବେ ତ ? ଜୀବନ ମରଣ ମଣିଷର ଅଧୀନ ନୁହେଁ; ତା ଈଶ୍ୱରଙ୍କ ହାତରେ । ଆପଣମାନେ ଅତି ଉତ୍ତମ ଲୋକ; ମୋତେ ଜମି ଦେଉଛନ୍ତି; କାଲି ଆପଣଙ୍କ ପିଲାମାନେ ମୋଠାରୁ ସେତକ ଛଡ଼ାଇ ନେଇପାରନ୍ତି ।"

ସରଦାର କହିଲେ, "ତୁମେ ଯାହା କହୁଛ ତାହା ଠିକ୍ କଥା । ଆମେ ଯେଉଁ ଜମି ଦେବୁ, ସେ ବିଷୟରେ ଲେଖା ପଢ଼ା କରିଦେବା । ତେବେ କିଛି ଗୋଳମାଳର ଭୟ ରହିବ ନାହିଁ ।"

ପାହୋମ ପୁଣି କହିଲା, "ଏଠାକୁ ଜଣେ ବେପାରୀ ଆସିଥିଲା ବୋଲି ଶୁଣିଛି । ତାକୁ ମଧ୍ୟ ଆପଣମାନେ କିଛି ଦେଇ ଗୋଟିଏ ଦଲିଲ ଲେଖି ଦେଇ ଅଛନ୍ତି । ମୋତେ ସେହିପରି ଗୋଟିଏ ଦଲିଲ ଲେଖି ଦେଲେ ଭଲ ହେବ ।"

ସରଦାର ଏହା ଶୁଣି ପାହୋମର ମନର ସନ୍ଦେହ ବୁଝି ପାରିଲେ । ସେ କହିଲେ, "ନିଶ୍ଚୟ, ନିଶ୍ଚୟ । ଦଲିଲ୍ କରିଦେବା

କିଛି କଠିନ କାମ ନୁହେଁ । ଆମ ଏଠାରେ ଜଣେ ମୋହରିର ଅଛନ୍ତି । ସେ ଦଲିଲ ଲେଖିଦେବେ । ଆମେ ତୁମକୁ ସଙ୍ଗରେ ନେଇ ସହରକୁ ଯିବୁ ଓ ଦଲିଲ ରେଜିଷ୍ଟ୍ରି କରିଦେବୁ ।"

ପାହୋମ ପଚାରିଲା, "ସବୁ କଥା ହେଲା, କିନ୍ତୁ ଜମିର ଦର କେତେ ?"

ସରଦାର ଉତ୍ତର କଲେ, "ଆମର ସବୁକାଳେ ଗୋଟାଏ ଦର । ଦିନକୁ ହଜାରେ ଟଙ୍କା ।"

ପାହୋମ ଏଥିରୁ କିଛି ବୁଝି ପାରିଲା ନାହିଁ । ଦିନକୁ ହଜାରେ ଟଙ୍କା—ଏହାର କି ଅର୍ଥ ହୋଇପାରେ ?

ଜମି ଏକର ହିସାବରେ ମପାଯାଏ । ମାତ୍ର ଏ କି ଅଦ୍ଭୁତ ମାପ ? ସେ ପଚାରିଲା, "ସରଦାର ମହାଶୟ, ଦିନେ କହିଲେ କେତେ ଏକର ବୁଝାଯାଏ ?"

ସରଦାର କହିଲେ, "ଆମେ ଏକର ମାପ ବୁଝୁ ନାହିଁ । ଆମର ଅନ୍ୟ କୌଣସି ମାପ ନାହିଁ । ଆମେ ଦିନ ହିସାବରେ ଜମି ବିକି କରୁ । ଦିନକ ମଧ୍ୟରେ ତୁମେ ପାଦରେ ଚାଲି ଯେତେ ଜମିର ଚାରିପାଖେ ବୁଲି ଆସି ପାରିବ, ତାର ମୂଲ୍ୟ ହେଉଛି ଏକ ହଜାର ଟଙ୍କା ।"

ପାହୋମ ଏ ପ୍ରକାର ଦର ଶୁଣି ଆଶ୍ଚର୍ଯ୍ୟ ହୋଇଗଲା । ସେ କହିଲା, "ଦିନକ ଭିତରେ ଜଣେ ଲୋକ ଗୋଟାଏ ଜଲା ବୁଲି ଆସିପାରେ । ତେବେ କଅଣ ସେ ହଜାରେ ଟଙ୍କାରେ ସେ ସବୁ ଜମି ପାଇବ ?"

ସରଦାର ଖୁବ୍ ଜୋର୍‌ରେ ହସି ଉଠି କହିଲେ, "ତୁମେ ଯେବେ ଦିନକ ଭିତରେ ଗୋଟାଏ ଜଲାର ଚାରିପାଖେ ବୁଲି ଆସି ପାରିବ, ସେ ସବୁ ଜମି ତୁମର ହେବ, ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ଏଥିରେ ଗୋଟିଏ ସର୍ତ୍ତ ଅଛି । ତୁମେ ଯେଉଁଠାରୁ ବାହାରିଥିବ, ସନ୍ଧ୍ୟା ପୂର୍ବରୁ ସେଠାକୁ ଫେରି ଅସି ନ ପାରିଲେ ତୁମେ କିଛି ଜମି ପାଇବ ନାହିଁ; ତୁମର ଟଙ୍କା ମଧ୍ୟ ଫେରସ୍ତ ଦିଆଯିବ ନାହିଁ ।"

"କିନ୍ତୁ ମୁଁ କେଉଁ ବାଟେ ଗଲି, ତାର ଚିହ୍ନ କିପରି ରହିବ ?" ପାହୋମ ପ୍ରଶ୍ନ କଲା ।

ସରଦାର ବୁଝାଇ ଦେଇ କହିଲେ, "ସେଥିରେ କିଛି ଅସୁବିଧା ହେବ ନାହିଁ । ତୁମେ ଯେଉଁଠାରୁ ଯିବାକୁ ଆରମ୍ଭ କରିବ, ଆମେ ସେଠାରେ ବସିରହିବୁ । ସାଙ୍ଗରେ ଗୋଟିଏ କୋଡ଼ି ନେଇଯିବ । ଗଲାବେଳେ ଯେଉଁଠି ଇଚ୍ଛା ହେଉଥିବ ସେଠାରେ ଗୋଟିଏ ଗୋଟିଏ ଚିହ୍ନ କରିଦେଉଥିବ । ଯେଉଁଠାରେ ବାଟ ଭାଙ୍ଗି ଅନ୍ୟ ଦିଗକୁ ଯିବ ସେଠାରେ ଗୋଟିଏ ଗାତ କରି ତା ପାଖରେ କିଛି ମାଟି ଜମା କରି ଦେଉଥିବ । ତୁମେ କୌଣସି ଦିଗରେ ଯେତେ ଦୂର ଗଲେ କିଛି ଆପତ୍ତି ନାହିଁ, କେବଳ ସୂର୍ଯ୍ୟ ଅସ୍ତ ଯିବା ପୂର୍ବରୁ ଯେଉଁଠାରୁ ବାହାରିଥିଲ ସେଇ ସ୍ଥାନକୁ ଫେରି ଅସିବାକୁ ହେବ । ଏହି ସୀମା ଭିତରେ ଯେତେ ଜମି ରହିବ, ସେ ସବୁ ହେବ ତୁମର ।"

ପାହୋମର ଆନନ୍ଦ କହିଲେ ନ ସରେ । ସେ ପରଦିନ ସକାଳୁ ଜମି ଆଣିବାକୁ ଯିବ ବୋଲି ସ୍ଥିର କଲା । ସେଦିନ ସେ ବଶ୍‌କିରମାନଙ୍କ ସହିତ କିଛି ସମୟ ଗଳ୍ପ କରି ଆନନ୍ଦରେ କିଛି ମଦ ପିଇଲା । ତାହା ପରେ ମାଂସ ଖାଇ ଓ ଚାହା ପିଇ ଶୋଇବାକୁ ଗଲା । ବଶ୍‌କିରମାନେ ପରଦିନ ଖୁବ୍ ସକାଳେ ଆସିବେ ବୋଲି କହି ବିଦାୟ ନେଲେ । ସମସ୍ତେ ଘୋଡ଼ାରେ ବସି ସୂର୍ଯ୍ୟୋଦୟ ପୂର୍ବରୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ସ୍ଥିର ହେଲା ।

( ସାତ )

ବଶ୍‌କିରମାନେ ପାହୋମ ଶୋଇବା ପାଇଁ ଗୋଟିଏ କୋମଳ ବିଛଣା ବନ୍ଦୋବସ୍ତ କରିଦେଇଥିଲେ । କିନ୍ତୁ ସେଥିରେ ମଧ୍ୟ ପାହୋମର ନିଦ ହେଲା ନାହିଁ । ସେ ରାତିଯାକ ଚେଇଁ ରହି କେବଳ ଜମି କଥା ଭାବୁଥାଏ ।

ସେ ଚିନ୍ତା କଲା, "କେତେ ବଡ଼ ଜମି ମୁଁ ଘେରି ଦେଇ ପାରିବି ? ଦିନକ ଭିତରେ ମୁଁ ଅଟକ୍ଲେଶରେ ପଞ୍ଚତିରିଶ ମାଇଲ ଚାଲିପାରିବି । ଅଜିକାଲି ପୁଣି ଦିନ ବଡ଼ । ପଞ୍ଚତିରିଶ ମାଇଲ ଭିତରେ ହଜାର ହଜାର ଏକର ଜମି ବାହାରିଯିବ । ଖରାପ ଜମିତକ ବିକି କରିଦେବି; ନ ହେଲେ ଖଜଣା ନେଇ ଅନ୍ୟ ଚାଷୀମାନଙ୍କୁ ଚଷିବାକୁ ଦେବି । ଅସଲ ଜମିଯାକ ମୁଁ ନିଜେ ଚାଷକରିବି । ଦୁଇ ହଳ ବଳଦ କିଣିବି; ଆଉ ଦୁଇଜଣ ଚାକର ରଖିବି । ପ୍ରାୟ ଦେଢ଼ଶ ଏକର ଜମି ନିଜ ଚାଷରେ ରହିବ । ଅବଶିଷ୍ଟ ଜମିରେ ମୋର ଗୋରୁ ମେଣ୍ଢାଆଦି ପଶୁ ଚରିବେ ।"

ପାହାନ୍ତିଆ ବେଳକୁ ପାହୋମକୁ ଟିକିଏ ନିଦ ହୋଇ ଆସିଲା । ସେହି ସମୟରେ ସେ ଗୋଟିଏ ସ୍ୱପ୍ନ ଦେଖିଲା । ତାକୁ ବୋଧହେଲା, ସେ ତମ୍ବୁ ଭିତରେ ଶୋଇଛି, ଏହି ସମୟରେ ବାହାରେ କିଏ ଜଣେ ଉଚ୍ଚ ସ୍ୱରରେ ହସିଲା । କିଏ ଏପରି ହସିଲା ସେ ଠିକ୍ କରି ନପାରି ବାହାରକୁ ଗଲା । ତମ୍ବୁର ଦୁଆର ପାଖରେ ବଶ୍‌କିର ସର୍ଦ୍ଦାର ବସି ଯେପରି ହସୁଥିଲା । ସେ ପେଟକୁ ଚିପିଧରି ହସି ହସି ଗଡ଼ିଯାଉଥିଲା । ପାହୋମ ତା ପାଖକୁ ଯାଇ ପଚାରିଲା "ଅପଣ, ଏପରି ହସୁଛନ୍ତି କାହିଁକି ?" ମୁହୂର୍ତ୍ତିକ ପରେ ପାହୋମ ଦେଖିଲା,

ସେ ଲୋକଟା ବଶ୍‌କିର ସରଦାର ନୁହେଁ; ଯେଉଁ ବେପାରୀ ତା ଘରେ ରହି ଏ ଜମିର ଖବର ଦେଇଥିଲା, ଏ ସେହି ବେପାରୀ । ପାହୋମ ତାକୁ ପଚାରିବାକୁ ଯାଉଥିଲା—ତୁମେ କେଉଁଦିନୁ ଏଠାକୁ ଆସିଲଣି ? ମାତ୍ର ସେ ଦେଖିଲା, ସେ ବେପାରୀ ଆଉ ନାହିଁ; ରହିଛି ଭଲ୍‌ଗା କୂଳର ଚାଷୀ, ଯିଏ ବହୁଦିନ ପୂର୍ବେ ପାହୋମ ଘରକୁ ଆସିଥିଲା । ମୁହୂର୍ତ୍ତକ ଭିତରେ ସେ ଚାଷୀ କୁଆଡ଼େ ଉଭେଇଗଲା; ତା ସ୍ଥାନରେ ଦେଖା ଦେଲା ସଇତାନ ନିଜେ । ତାର ଦେହଟା ପଶୁର ଦେହପରି । ସେ ବସି ହସୁଥାଏ । ତାର ଆଗରେ ଗୋଟାଏ ମନୁଷ୍ୟ ଲମ୍ବହୋଇ ପଡ଼ିଥାଏ । ଲୋକଟାର ଦେହରେ ଖଣ୍ଡେ କମିଜ ଓ ପାଇଜାମା । ପାହୋମ ଏହି ଲୋକକୁ ଚିହ୍ନିବାପାଇଁ ଭଲକରି ଅନାଇଲା । ଦେଖେତ ଲୋକଟାର ଦେହରେ ଜୀବନ ନାହିଁ, ପୁଣି ସେ ହେଉଛି ପାହୋମର ମୃତଦେହ । ଏପରି ଏକ ବିକଟ ସ୍ୱପ୍ନ ଦେଖିବା ପରେ ତାର ନିଦ ଭାଙ୍ଗିଗଲା । ସେ ଉଠିଲା ବେଳକୁ ଭୟରେ ତାର ଦେହ କମ୍ପୁଥାଏ । ସ୍ୱପ୍ନରେ ନିଜର ମରଣ ଦେଖି ପାହୋମ ଭାବିଲା, "ଓଃ, ଗୋଟାଏ କି ଭୟଙ୍କର ସ୍ୱପ୍ନ ଦେଖିଲି ।" ସେ ଆଖି ମଳି ମଳି ଦେଖିଲା ସୂର୍ଯ୍ୟ ଉଦୟ ହୋଇ ଆସୁଛନ୍ତି । ଶୀଘ୍ର ଯିବାକୁ ହେବ । ଚାକର ଗାଡ଼ି ଭିତରେ ଶୋଇଥିଲା । ପାହୋମ ତାକୁ ଉଠାଇ ଶୀଘ୍ର ଘୋଡ଼ା ସଜ କରିବାକୁ କହିଲା । ନିଜେ ବଶ୍‌କିରମାନଙ୍କ ତମ୍ବୁକୁ ଯାଇ କହିଲା, "ଜମି ମାପିବାକୁ ଯିବାର ବେଳ ହୋଇଗଲା । ଆସନ୍ତୁ ।"

ବଶ୍‌କିରମାନେ ଉଠି ଏକତ୍ର ହେଲେ । ସେମାନଙ୍କ ସର୍ଦ୍ଦାର ମଧ୍ୟ ଆସିଲେ । ସମସ୍ତେ କଣ୍ଟା କଣ୍ଟା ମଦ ପିଇଲେ । ପାହୋମକୁ ଚାହା ପିଇବାକୁ ଯାଚିଲେ; ମାତ୍ର ଚାହା ପିଇ ପିଇ ଡେରି ହୋଇଯିବା

ଉପୁରେ ସେ ମନା କରଦେଲ । ସେ କହୁଲ, "ବେଳ ହୋଇଗଲ୍ଣି, ଅସନ୍ତୁ ।"

ଅନେକେ ଘୋଡ଼ାରେ ବସି ଗଲେ; ଅଉ କେତେଜଣ ଗାଡ଼ିରେ ଗଲେ । ପାହୋମ ଓ ତାର ଚାକର ଗାଡ଼ିରେ ଗୋଟିଏ କୋଣ ଦେଖି ବସିଲେ । ସମତଳ ଅଞ୍ଚଳରେ ପହଞ୍ଚିଲ ବେଳକୁ ପୂର୍ବ ଆକାଶ ବାଳ ସୂର୍ଯ୍ୟର କିରଣରେ ଲଲ ହୋଇ ଆସୁଥାଏ । ଘୋଡ଼ା ଓ ଗାଡ଼ିରୁ ଓହ୍ଲାଇ ସମସ୍ତେ ଗୋଟିଏ ଛୋଟ ମୁଣ୍ଡିଆ ଉପରକୁ ଉଠିଲେ । ସରଦାର ସମତଳ ଅଞ୍ଚଳ ଅଡ଼କୁ ହାତ ବଢ଼ାଇ ପାହୋମକୁ କହିଲେ, "ଆଗରେ ଯେତେ ଦୂର ଯାଏ ଆଖି ପାଉଛି ସେସବୁ ଆମର । ଏଥିରୁ ତୁମେ ଯେଉଁ ଅଂଶ ନେବାକୁ ଇଚ୍ଛା କର ତାହା ନେଇପାର ।"

ଜମିକୁ ଚାହିଁଲାକ୍ଷଣି ପାହୋମର ଆଖି ଉଜ୍ଜ୍ୱଳ ହୋଇ ଅସିଲା । ଏ ଜମିରେ ଆଗରୁ ଚାଷ ହୋଇ ନାହିଁ; ସମତଳ ହୋଇଥିବାରୁ ଚାଷରେ ଅଡ଼ୁଆ ହେବନାହିଁ । କଳାମାଟି, ଭଲ ଫସଲ ହେବ । ଖାଲୁଆ ଜାଗାରେ ଛାତିଏ ଉଚ୍ଚର ଘାସ ବଢ଼ିଛି । ଏହାକୁ ଦେଖି ପାହୋମର ଲୋଭ ବଢ଼ିଗଲା ।

ସରଦାର ନିଜ ମୁଣ୍ଡର ପଶମ ଟୋପିଟି ତଳେ ରଖି କହିଲେ, "ଏହି ଟୋପି ଚିହ୍ନ ହେଲା । ତୁମେ ଏଇଠାରୁ କୋଡ଼ିଧରି ବାହାରିବ, ପୁଣି ଏଇଠାକୁ ଫେରିଅସିବ । ଯେତେ ଜମିର ଚାରିପାଖେ ଚିହ୍ନ ଦେଇଥିବ, ସେସବୁ ହେବ ତୁମର ।"

ପାହୋମ ଟଙ୍କା ବାହାର କରି ଟୋପି ଉପରେ ରଖିଦେଲା । ଚାଲିବାର ସୁବିଧାପାଇଁ ଦେହର କୋଟଟାକୁ କାଢ଼ି ରଖିଲ । ଅଣ୍ଟାରେ କମରପଟି ବାନ୍ଧିଲା । କମିଜ ପକେଟରେ କିଛି ରୁଟି

ପୂରାଇଲା । ଗୋଟିଏ ପାଣି ବୋତଲ କମରପଟିରେ ଝୁଲାଇଦେଲା । ଗୋଡ଼ରେ ବୁଟ୍‌ର ଫିତାକୁ କଷିଦେଇ, ଗୁହ୍ଲରୁ ହାତରୁ କୋଡ଼ିଟି ନେଇ ସେ ଚାଲିବାପାଇଁ ପ୍ରସ୍ତୁତ ହେଲା । ସେ ଚିନ୍ତା କଲା, "ସବୁଆଡ଼ ଜମି ସରସ ଦିଶୁଛି । ଆଗ କେଉଁ ଦିଗକୁ ଯିବ ? ଏତେ ଚିନ୍ତା କାହିଁକି ? ଯେ କୌଣସି ଆଡ଼କୁ ଗଲେ ଅସଲ ଜମି ମିଳିବ । ଆଗ ଏଇ ସୂର୍ଯ୍ୟକୁ ମୁହଁ କରି ଯାଏ ।"

ଏହା ବିଚାରି ସେ ପୂର୍ବ ଦିଗକୁ ମୁହଁ କରି ଛିଡ଼ା ହେଲା । ସେତେବେଳକୁ ସୂର୍ଯ୍ୟ ପୂରା ଦେଖା ଯାଇ ନ ଥାନ୍ତି । ସେ ଭାବିଲା, "ମୁଁ ଟିକିଏ ହେଲେ ସମୟ ନଷ୍ଟ କରିବି ନାହିଁ । ସକାଳୁଆ ସୂର୍ଯ୍ୟକିରଣ ଦେହକୁ ବାଧିବ ନାହିଁ । ଥଣ୍ଡାରେ ଅନେକ ଦୂର ଚାଲିଯିବ ।"

ସୂର୍ଯ୍ୟ ପୂରା ଦେଖା ଦେଲା ମାତ୍ରେ ପାହୋମ କୋଡ଼ି ଧରି ଯିବାକୁ ଆରମ୍ଭ କଲା ।

ତାର ଚାଲି ଚଞ୍ଚଳ ନ ଥିଲା କି ମଠ ନ ଥିଲା । ପ୍ରାୟ ହଜାରେ ଗଜ ଯିବା ପରେ ସେ ଗୋଟିଏ ଗାତ ଖୋଳି ତା ପାଖରେ କିଛି ମାଟି ଗଦା କଲା । ତା ଉପରେ ଘାସ ଚେକା କେତୋଟି ରଖି ଦେଲା । ଆଗେଇ ଗଲା ବେଳେ ଏହାକୁ ଦେଖିପାରିବ ବୋଲି ସେ ଏପରି କରିଥିଲା । ସେ ପୁଣି ଚାଲିଲା; ତା ପାଦର ଗତି ଟିକିଏ ବଢ଼ିଗଲା । କିଛି ସମୟ ଚାଲିବା ପରେ ସେ ପୂର୍ବପରି ଆଉ ଗୋଟିଏ ଗାତ ଖୋଳି ମାଟି ଗଦା କଲା ।

ପାହୋମ ପଛକୁ ଚାହିଁଲା । ସୂର୍ଯ୍ୟକିରଣରେ ମୁଣ୍ଡ ଅଠା ସଫା ଦେଖାଯାଉଥାଏ । ତା ଉପରେ ବସିଥିବା ଲୋକ ଦେଖାଯାଉଥାନ୍ତି

ଏପରି କି ଗାଡ଼ିଚକରେ ଲଗିଥିବା ଲୁହାର ହାଲ୍ ମଧ୍ୟ ଚକ୍ ଚକ୍ ଦିଶୁଥାଏ । ପାହୋମ ଅନୁମାନ କଲା, ସେ ତିନି ମାଇଲ ଆସି-ସାରିଲଣି । ସୂର୍ଯ୍ୟ ଉପରକୁ ଉଠିବା ସଙ୍ଗେ ଗରମ ହେଉଥାଏ । ସେ ଦେହରୁ କମିଜଟା ବାହାର କରି କାନ୍ଧ ଉପରେ ପକାଇ ଚାଲିଲା । କିଛି ଦୂର ଯିବା ପରେ ସେ ଅଧିକ ଗରମ ଅନୁଭବ କଲା । ସୂର୍ଯ୍ୟଙ୍କ ଆଡ଼କୁ ଚାହିଁ ଭାବିଲା—ପହରେ ବେଳ ହେଲାଣି । ଏବେ କିଛି ଖାଇବା ଦରକାର ।

ସେ ବିଚାରିଲା, "ପହରେ ବେଳ ଗଲା । ହେଉ, ଦିନଟା ଚାରି ପହର । ଏତେ ଶୀଘ୍ର ଅନ୍ୟ ଦିଗକୁ ବାଟ ଭାଙ୍ଗିବା ଅବଶ୍ୟକ ନାହିଁ । କିନ୍ତୁ ଏ ବୁଟ୍ ଜୋତା ପିନ୍ଧି ଚାଲିବାରେ ଅସୁବିଧା ହେଉଛି । ଜୋତା ଯୋଡ଼ାକ କାଢ଼ି ପକାଏଁ ।" ଗୋଟାଏ ଜାଗାରେ ବସି ସେ ଗୋଡ଼ରୁ ବୁଟ୍ ଯୋଡ଼ାକ କାଢ଼ିଲା । ତାକୁ ନିଜ କମରପଟିରେ ଝୁଲାଇ ଚାଲିବାକୁ ଲାଗିଲା । ଏବେ ଚାଲିଲାବେଳେ କିଛି କଷ୍ଟ ହେଲା ନାହିଁ । ସେ ଭାବିଲା, "ଏହି ଦିଗରେ ଅଧିକ ତିନି ମାଇଲ ଯାଇ ବାମ ଦିଗକୁ ବଙ୍କେଇଯିବି । ଏଠାରେ ଜମିଗୁଡ଼ାକ ଏତେ ଭଲ ଜଣା ପଡ଼ୁଛି ! ଏହାକୁ ଛାଡ଼ି ଦେବା ମୋ ପକ୍ଷରେ ଘୋର ମୂର୍ଖତା ହେବ । ମୁଁ ଯେତିକି ଆଗକୁ ଯାଉଛି, ଜମି ସେତିକି ଭଲ ହୋଇ ବୋଧ ହେଉଛି । ଏହାକୁ କେବେ ଛାଡ଼ି ଦେବି ନାହିଁ ।"

ସେ ଅଧିକ କିଛି ବେଳ ଯାଏ ସିଧା ଚାଲିଲା । ପଛକୁ ଚାହିଁବାରୁ ସେ ମୁଣ୍ଡିଆକୁ ପ୍ରାୟ ଦେଖିପାରିଲା ନାହିଁ । ତାଉପରେ ବସିଥିବା ଲୋକମାନେ କଳାପରି ଦିଶୁଥିଲେ । ପାହୋମ ଭାବିଲା, "ମୁଁ ଅନେକ ଦୂର ଗୋଟାଏ ଦିଗରେ ଚାଲି ଆସିଲଣି । ଏବେ ବାଟ ଭାଙ୍ଗିବା ଦରକାର । ଖରା ମଧ୍ୟ ମାଡ଼ି ଆସୁଛି । ଖୁବ୍ ଶୋଷ ହେଲଣି ।"

ସେହିଠାରେ ସେ ଗାଢ ଖୋଳ ମାଟିର ଏକ ଗଦା କଲା ଓ ବୋତଲରୁ କିଛି ପାଣି ପିଇ ବାମ ପାଖକୁ ବାଟ ବଙ୍କେଇ ଚାଲିଲା । ସେତେବେଳକୁ ଖରାର ପ୍ରକୋପ ପ୍ରବଳ । ପାହୋମ କ୍ଳାନ୍ତି ଅନୁଭବ କଲା । ସୂର୍ଯ୍ୟଙ୍କୁ ଚାହିଁ ଜାଣିଲା, ବେଳ ଠିକ୍ ଦ୍ୱିପ୍ରହର ।

ସେ ଭାବିଲା, "ଏ ସମୟରେ ଟିକିଏ ବିଶ୍ରାମ ନ ନେଲେ ଚଳିବ ନାହିଁ ।" ସେ ସେଠାରେ ବସିପଡ଼ି ଖଣ୍ଡିଏ ରୁଟି ଖାଇ କିଛି ପାଣି ପିଇଲା । ଟିକିଏ ଶୋଇପଡ଼ିବାକୁ ତାର ଇଚ୍ଛା ହେଉଥିଲା; କିନ୍ତୁ ଶୋଇଲେ କାଳେ ନିଦ ହୋଇଯିବ ଏହି ଭୟରେ ସେ ଶୋଇଲା ନାହିଁ । କିଛି ସମୟ ବସିବା ପରେ ସେ ଉଠିପଡ଼ି ଚାଲିଲା । ଖାଇବା ପରେ ଦେହରେ ଟିକିଏ ବଳ ଆସିଥିଲା; ତେଣୁ କେତେବେଳ ପର୍ଯ୍ୟନ୍ତ ଚାଲିବାରେ ବିଶେଷ କଷ୍ଟ ହେଲାନାହିଁ । ମାତ୍ର ଖରା ତାତିରେ ବେଶୀ ବେଳ ଯାଏ ସେ ବଳ ରହିଲା ନାହିଁ । ଘୁମ ମାଡ଼ି ଆସିଲା । ତଥାପି ସେ ଚାଲିବାକୁ ଲାଗିଲା । ସେ ମନେ ମନେ ଭାବିଲା, "ଆଜି କେତେ ଘଣ୍ଟା କଷ୍ଟ ସହି ପାରିଲେ, ଜୀବନଟା ଯାକ ସୁଖରେ କଟାଇଦେବି । ସେଥିକି ଡରିଲେ ହେବ କିପରି ?"

ସେ ଅନେକ ବେଳ ଯାଏ ଚାଲି ଚାଲି ପୁଣି ବାମ ପାଖକୁ ବାଟ ବଙ୍କେଇବାକୁ ବାହାରିଲା । ଏହି ସମୟରେ ଗୋଟିଏ ଖାଲୁଆ ଜମି ଉପରେ ତାର ନଜର ପଡ଼ିଲା । ସେ ଭାବିଲା, "ଏ ଜମିରେ ଭଲ ହୋଟ ଚାଷ ହୋଇପାରିବ । ଏହାକୁ ଛାଡ଼ି ଯିବା ନିତାନ୍ତ ବୋକାମି ହେବ ।" ତେଣୁ ସେ ଆହୁରି କିଛି ଦୂର ସିଧା ଚାଲିବା ପରେ ବାମ ପାଖକୁ ସମକୋଣ କରି ବାଟ ଭାଙ୍ଗିଲା ।

ପାହୋମ ମୁଣ୍ଡିଆ ଆଡ଼କୁ ଚାହିଁଲା । ଖରା ହେତୁରୁ ସେ ସ୍ପଷ୍ଟଭାବରେ କିଛି ଦେଖି ପାରିଲା ନାହିଁ । ଲୋକମାନେ ମଧ୍ୟ

ଦେଖାଗଲେ ନାହିଁ । କେବଳ ସୂର୍ଯ୍ୟକିରଣ ପାହାଡ଼ ଉପରେ ନୃତ୍ୟ କରୁଥିଲା ପରି ତାକୁ ବୋଧ ହେଲା । ସେ ଭାବିଲା, "ମୁଁ ଏ ଦୁଇ ପାଖରେ ବହୁତ ଦୂର ଚାଲି ଆସିଲି । ଏଣିକି ଅଳ୍ପ ଦୂର ଯିବ ।" ଏହାପରେ ଚିନ୍ତା କରି ସେ ତୃତୀୟ ପାଖରେ ଚାଲିଲା । ନିର୍ଦ୍ଦିଷ୍ଟ ସମୟ ଭିତରେ ମୁଣ୍ଡିଆରେ ପହଞ୍ଚିବ ବୋଲି ସେ ବେଗରେ ଚାଲିଲା । ସୂର୍ଯ୍ୟଙ୍କୁ ଚାହିଁ ଦେଖିଲା, ବେଳ ତିନି ପହର ହୋଇଗଲାଣି । ସେତେବେଳକୁ ସେ ତୃତୀୟ ପାଖର ଦୁଇ ମାଇଲ ମାତ୍ର ଯାଇଥିଲା । ପାହାଡ଼ରେ ଠିକ୍ ସମୟରେ ପହଞ୍ଚିବାକୁ ହେଲେ ତାକୁ ଏଇ ପହରକ ଭିତରେ ଦଶ ମାଇଲ ଯିବାକୁ ପଡ଼ିବ ।

ସେ ଭାବିଲା, "ଜମି ଖଣ୍ଡିକ ଠିକ୍ ବର୍ଗାକାର ନ ହେଲେ ଭଲ ହେବ ନାହିଁ । କିନ୍ତୁ ଅନ୍ୟ ଦୁଇ ଦିଗରେ ଯେତିକି ଦୂର ଯାଇଛି, ସେତିକି ଦୂର ଲେଖାଏଁ ଯିବାକୁ ଆଉ ବେଳ ହେବନାହିଁ । ବରଂ ଜମିର ଆକାର ଅସମାନ ହେଉ, ଏଇଠାରୁ ସିଧା ପାହାଡ଼ ପାଖକୁ ଚାଲିଯିବି । ଯେତେ ଜମି ହେଲାଣି ସେତକ କମ୍ ନୁହେଁ ! ଆକାର ପାଇଁ ଚିନ୍ତା କଲେ ଚଳିବ ନାହିଁ ।" ସେ ସେହିଠାରେ ଗୋଟିଏ ଗାତ ଖୋଳିଦେଇ ମୁଣ୍ଡିଆ ଆଡ଼କୁ ଚାଲିଲା ।

( ଆଠ )

ପାହୋମ ମୁଣ୍ଡିଆକୁ ଲକ୍ଷ୍ୟ କରି ସିଧା ଚାଲିଲା; କିନ୍ତୁ ସେତେବେଳକୁ ତାକୁ ଚାଲିବାରେ କଷ୍ଟ ହେଉଥାଏ । ଏକେ ଖରା, ସେଥିରେ ପାଦରେ କଣ୍ଟାବାଜି ଘାଆ ହୋଇ ଯାଇଥାଏ । ପାଦରେ ଆଉ ବଳ ନ ଥାଏ । ଟିକିଏ ବିଶ୍ରାମ ନେବାକୁ ମନ ହେଉଥାଏ,

କିନ୍ତୁ ସନ୍ଧ୍ୟା ପୂର୍ବରୁ ପହଞ୍ଚିବାକୁ ହେବ ବୋଲି ବିଶ୍ରାମ ନେଇ ପାରିଲା ନାହିଁ । ସୂର୍ଯ୍ୟ କଅଣ ବୁଡ଼ି ନ ଯାଇ ତା ପାଇଁ ଅପେକ୍ଷା କରିବେ ?

ସେ ଥରେ ମୁଣ୍ଡିଆ ଆଡ଼କୁ, ଥରେ ସୂର୍ଯ୍ୟଙ୍କ ଆଡ଼କୁ ଚାହିଁଲା । ମୁଣ୍ଡିଆ ଅନେକ ଦୂରରେ; ସୂର୍ଯ୍ୟ ପଶ୍ଚିମ ଆକାଶରେ ଢଳିଲେଣି । ଏବେ ସେ କଅଣ କରେ ? ଦୌଡ଼ିବା ଛଡ଼ା ଅନ୍ୟ ଉପାୟ ନାହିଁ । କାନ୍ଧରୁ କୋଟ୍, ଅଣ୍ଟାରୁ କମରପଟି, ପାଣିବୋତଲ ଓ ମୁଣ୍ଡର ଟୋପି ସବୁ ତଳେ ଫିଙ୍ଗିଦେଇ ସେ ଦୌଡ଼ିବାକୁ ଲାଗିଲା । କେବଳ କୋଡ଼ିଟା ତା ହାତରେ ଥାଏ ।

ସେ ଭାବିଲା, "ମୁଁ କରିବି କଅଣ ? ବେଶି ଜମି ପାଇବାକୁ ଲୋଭ କରି ଏବେ ସବୁ ହରାଇବାକୁ ବସିଛି ।"

ସୂର୍ଯ୍ୟ ଅସ୍ତ ଯିବା ପୂର୍ବରୁ ମୁଣ୍ଡିଆ ପାଖରେ ପହଞ୍ଚିବା ଆଶା ଦେଖାଯାଉ ନାହିଁ ।

ସବୁ ହରାଇବା ଭୟରେ ତାର ବଳ ହଟି ଆସିଲା; ନାକରୁ ଖର ନିଶ୍ୱାସ ବୋହିଲା । ତଥାପି ସେ ଦୌଡ଼ିଲା । ଝାଳରେ କମିଜ ଓ ପାଇଜାମା ଓଦା ହୋଇ ଦେହରେ ଲାଗି ଯାଇଥାଏ; ଜିଭ ଶୁଖି ଯାଉଥାଏ, ଛାତି କମାର ହାପୁଡ଼ିରେ ପିଟିଲା ପରି ଦୁମ୍ ଦୁମ୍ ପଡ଼ୁଥାଏ । ଗୋଡ଼ ଦୁଇଟା ଅବଶ ହୋଇ ପଡ଼ୁଥାନ୍ତି । ପାହୋମର ପ୍ରାଣ ଛାଡ଼ିଯିବ ବୋଲି ଆଶଙ୍କା ହେଲା । ମାତ୍ର ସେ ଚେଷ୍ଟାରୁ ବିରତ ହେଲା ନାହିଁ । ଏତେ ବାଟ ଯିବା ପରେ ସେ ଏଣୁଠାରେ ରହିଗଲେ ଲୋକେ ତାକୁ କଅଣ କହିବେ ? ସେ ମୂହୂର୍ତ୍ତେ ଡେରି ନ କରି ଦୌଡ଼ିବାକୁ ଲାଗିଲା । ତାକୁ ଏବେ

ମୁଣ୍ଡିଆଟା ଦେଖାଗଲାଣି ଓ ବଶ୍କିରମାନେ ତାକୁ ଡାକୁଥିବାର ଶବ୍ଦ ଶୁଣାଗଲାଣି । ଏତେବେଳେ କି ସେ ହେଳା କରି ରହିଯିବ ? ଦେହର ସକଳ ଶକ୍ତି ସଂଗ୍ରହ କରି ସେ ଦୌଡ଼ିଲା ।

ସୂର୍ଯ୍ୟ ଅସ୍ତାଚଳକୁ ଛୁଇଁଲେଣି । ତାଙ୍କର ରଙ୍ଗ ରକ୍ତିମ ହୋଇ ଆସୁଛି । ତାଙ୍କ ଚାରିପାଖରେ ଗୋଟାଏ ବଳୟାକାରର ଧୂସର ରେଖା । ଠିକ୍ କ ପରେ ଯେ ସୂର୍ଯ୍ୟ ଅସ୍ତ ଯିବେ, ଏଥିରେ ସନ୍ଦେହ ନାହିଁ । ଏଣେ ପାହୋମ ମଧ୍ୟ ମୁଣ୍ଡିଆର ଖୁବ୍ ନିକଟରେ ହେଲଣି । ବଶ୍କିରମାନେ ହାତ ହଲାଇ ଶୀଘ୍ର ଆସିବାକୁ ଡାକୁଥିବାର ସେ ଶୁଣି ପାରୁଛି । ପଶମ ଟୋପିଟା ତଳେ ରହିଛି ଓ ସରଦାର ତା ପାଖରେ ବସିଛି । ହାତ ଦୁଇଟାରେ ସେ ପେଟର ଦୁଇ ପାଖକୁ ଚିପି ଧରିଛି । ଗତ ରାତିରେ ପାହୋମ ସ୍ୱପ୍ନରେ ସରଦାରକୁ ଯେଉଁ ରୂପରେ ଦେଖିଥିଲା, ଏବେ ତାର ଠିକ୍ ସେଇ ରୂପ ।

ପାହୋମ ଭାବିଲା, "ଏତେ ଜମି ପଡ଼ିଛି, କିନ୍ତୁ ସେ ଜମି ଭୋଗିବାକୁ ଈଶ୍ୱର ମୋତେ ରଖିଲେ ସିନା ହେବ ? ମୋର ଜୀବନ ବାହାରିଯାଉଛି । ନା, ନା, ଆଉ ଦୌଡ଼ ପାରିବି ନାହିଁ । ମୁଣ୍ଡିଆରେ ପହଞ୍ଚିପାରିବା ମୋ ପକ୍ଷରେ ଆଉ ସମ୍ଭବ ନୁହେଁ ।"

ପାହୋମ ସୂର୍ଯ୍ୟଙ୍କ ଆଡ଼କୁ ଚାହିଁଲା । ଦେଖିଲା, ତଳ ଅଂଶ ଦେଖାଯାଉ ନାହିଁ । ଆଉ କେତୋଟି ମୁହୂର୍ତ୍ତ ପରେ ସୂର୍ଯ୍ୟ ପୂର୍ଣ୍ଣରୂପେ ଅସ୍ତ ହୋଇଯିବେ । ସେ ଦେହକୁ ନୁଆଇଁ ପ୍ରାଣପଣେ ଦୌଡ଼ିଲା । ଗୋଡ଼ ଦୁଇଟା ଯେପରି ଅଗକୁ ଯିବାକୁ ପ୍ରସ୍ତୁତ ନଥିଲେ; ସେ ଗୋଡ଼କୁ ଟାଣି ଟାଣି ନେଉଥିଲା । ସେ ମୁଣ୍ଡିଆ ପାଖରେ ପହଞ୍ଚିଲା । ହଠାତ୍ ଚତୁର୍ଦ୍ଦିଗ ଅନ୍ଧକାରମୟ ଦେଖାଗଲା । ସେ ଦେଖିଲା ଯେ ସୂର୍ଯ୍ୟ ଅସ୍ତ ହୋଇଗଲେଣି । ପାହୋମ ଚିତ୍କାର କରି ଉଠିଲା, "ହାୟ, ମୋର ସବୁ ଚେଷ୍ଟା ବୃଥା ହୋଇଗଲା ।"

ସେ ସେହିଠାରେ ରହିଗଲା । କିନ୍ତୁ ବଶ୍‌କିରମାନେ ଡାକୁଥାନ୍ତି— ସାବାସ୍‌, ସାବାସ୍‌, ଶୀଘ୍ର ମୁଣ୍ଡିଆ ଉପରକୁ ଉଠିଆସ । ହଠାତ୍ ପାହୋମର ମନେପଡ଼ିଗଲା, ମୁଣ୍ଡିଆ ତଳୁ ସୂର୍ଯ୍ୟ ଦେଖାଯାଉ ନାହାନ୍ତି, କିନ୍ତୁ ମୁଣ୍ଡିଆ ଉପରେ ଥିବା ଲୋକେ ସୂର୍ଯ୍ୟଙ୍କୁ ଦେଖିପାରୁଥିବେ । ସେଇଥିପାଇଁ ସେମାନେ ତାକୁ ଡାକୁଛନ୍ତି । ସେ ଗୋଟାଏ ଲମ୍ବା ନିଃଶ୍ୱାସ ପକାଇ ମୁଣ୍ଡିଆ ଉପରକୁ ଉଠିଗଲା । ସେଠାରୁ ସୂର୍ଯ୍ୟ ଦେଖାଯାଉଥିଲେ । ପଶମ ଟୋପିଟି ସେହିପରି ତଳେ ରହିଥିଲା; ସରଦାର ଦୁଇ ହାତରେ ପେଟର ଦୁଇପାଖ ଚିପିଧରି ହସୁଥିଲେ । ରାତିର ସ୍ୱପ୍ନ କଥା ପୁଣି ପାହୋମର ମନେପଡ଼ିଗଲା । ସେ ଚିତ୍କାର କରି ଉଠିଲା । ତାର ପାଦ ଦୁଇଟା ଏକବାରେ ଅଚଳ ହୋଇଗଲା । ସେ ଭୂଇଁରେ ପଡ଼ିଗଲା ଓ ହାତ ଦୁଇଟା ବଢ଼ାଇ ଟୋପିକୁ ଛୁଇଁଲା ।

ସରଦାର ହସି ହସି କହିଲେ, "ସାବାସ୍‌, ବଡ଼ ବାହାଦୁର ଲୋକ । ଅନେକଗୁଡ଼ାଏ ଜମି ପାଇଗଲ ।"

ଚାକର ଦୌଡ଼ିଆସି ପାହୋମକୁ ଟେକି ଉଠାଇବାକୁ ଚେଷ୍ଟା କଲା । ମାତ୍ର ସେତେବେଳକୁ ତା ପିଣ୍ଡରେ ଆଉ ପ୍ରାଣ ନଥିଲା । ମୁହଁରୁ ମେଞ୍ଚାଏ ରକ୍ତ ବୋହି ଯାଇଥିଲା । ବଶ୍‌କିର-ମାନେ ପାହୋମର ମୃତ୍ୟୁରେ ଗଭୀର ଦୁଃଖ ପ୍ରକାଶ କଲେ ।

ପାହୋମର ଚାକର କୋଡ଼ି ନେଇ ଗୋଟିଏ ସାଢ଼େ ତିନିହାତ ଲମ୍ବର ଗାତ ଖୋଳି ସେଥିରେ ଶବଟିକୁ ଶୁଆଇଦେଲା ଓ ମାଟି ପୋତିଦେଲା ।

ପାହୋମର ଏଇ ସାଡ ଖଣ୍ଡ ମାତ୍ର ଜମି ଲୋଡ଼ାଥିଲା ।

———

# କକେସସ୍‌ର ବନ୍ଦୀ

ଝିଲିନ ନାମରେ ଜଣେ ସୈନ୍ୟବିଭାଗର କର୍ମଚାରୀ କକେସସ ଅଞ୍ଚଳରେ ନିଯୁକ୍ତ ଥିଲା । ଦିନେ ସେ ଖଣ୍ଡିଏ ଚିଠି ପାଇଲା । ଚିଠି ଖଣ୍ଡିକ ଘରୁ ତାର ମାଆ ପଠାଇଥିଲା । ସେଥିରେ ମାଆ ଲେଖିଥିଲା, "ମୁଁ ବୁଢ଼ୀ ହେଲିଣି । ମରିବା ଆଗରୁ ଥରେ ତୋତେ ଦେଖିବାକୁ ମୋର ଭାରି ଇଚ୍ଛା । ତୁ ଘରକୁ ଆସି ମୋତେ ସଂସାରରୁ ବିଦାୟ ଦେ । ମୋତେ କବର ଦେଇସାରି ତୁ ପୁଣି ଇଚ୍ଛା କଲେ ଚାକିରିକୁ ଫେରିଯିବୁ । ଏଥିମଧ୍ୟରେ ମୁଁ ତୋ ପାଇଁ ଗୋଟିଏ କନ୍ୟା ସ୍ଥିର କରିଛି । ଝିଅଟି ସୁନ୍ଦରୀ ଓ ଗୁଣବତୀ । ତାର କିଛି ସମ୍ପତ୍ତି ମଧ୍ୟ ଅଛି । ତୋ ମନକୁ ପାଇଲେ ତୁ ତାକୁ ବିଭାହୋଇ ଘରେ ରହିପାରୁ । ତୋତେ ମୁଁ ଚାହିଁରହିଛି ।"

ଚିଠିଖଣ୍ଡିକ ପଢ଼ି ଝିଲିନ ଭାବିଲା, 'ମାଆ ଯାହା ଲେଖିଛି, ସତ । ବୁଢ଼ୀ ହେଲାଣି, ଆଉ କେତେ ଦିନ ଅବା ବଞ୍ଚିବ ? ଏବେ ଘରକୁ ନଗଲେ ହୁଏତ ମାଆକୁ ଆଉ ଦେଖି ପାରିବି ନାହିଁ । ମୋର ଘରକୁ ଯିବା ଉଚିତ । ଯଦି ଝିଅଟି ପ୍ରକୃତରେ ଭଲ ହୋଇଥାଏ, ତେବେ ତାକୁ ବିବାହ କରିବାରେ କ୍ଷତି କଅଣ ?'

ଏହିପରି ବିଚାରି ସେ ନିଜ ଦଳର ଅଧ୍ୟକ୍ଷଙ୍କ ଠାରୁ ଛୁଟି ଆଣିଲା । ବନ୍ଧୁମାନଙ୍କଠାରୁ ବିଦାୟ ମାଗି ସେ ଘରକୁ ବାହାରିଲା ।

ସେତେବେଳେ କକେସସ ଅଞ୍ଚଳରେ ଠାଏ ଠାଏ ଯୁଦ୍ଧ ଲାଗିଥାଏ । ସୀମାନ୍ତ ଅଞ୍ଚଳରେ ବାସ କରୁଥିବା ତାତାରମାନେ

ତୁଷୀୟମାନଙ୍କ ଉପରେ ଉପଦ୍ରବ କରୁଥିଲେ । କୌଣସି ତୁଷୀୟ ନିଜ ତମ୍ବୁଠାରୁ କରୁ ଦୂରକୁ ଚାଲିଗଲେ ଡାକୁମାନେ ତାଙ୍କୁ ମାରିପକାଉଥିଲେ କିମ୍ବା ପାହାଡ଼ିଆ ଅଞ୍ଚଳକୁ ଧରି ନେଉଥିଲେ । ତୁଷୀୟ ପଥିକମାନଙ୍କୁ ନିରାପଦ ରଖିବାପାଇଁ ଗୋଟିଏ ବ୍ୟବସ୍ଥା କରାଯାଇଥିଲା । ପ୍ରତି ସପ୍ତାହରେ ଦୁଇଦିନ ଗୋଟିଏ ସୈନ୍ୟଦଳ ପଥିକମାନଙ୍କ ସଙ୍ଗରେ ରହି ସେମାନଙ୍କୁ ଗୋଟିଏ ଶିବିରରୁ ନିକଟବର୍ତ୍ତୀ ଶିବିରକୁ ନେଇଯାଉଥିଲେ ।

ଗ୍ରୀଷ୍ମ ଋତୁ ହୋଇଥାଏ । ସକାଳୁ ଦଳେ ପଥିକ ଓ ଦଳେ ସୈନିକ ଯିବା ପାଇଁ ପ୍ରସ୍ତୁତ ହେଲେ । ସୈନିକମାନେ ଆଗେ ଆଗେ ଘୋଡ଼ାରେ ବସି ଚାଲିଲେ । ତାଙ୍କ ପଛରେ ପଥିକମାନେ କିଏ ଘୋଡ଼ାରେ, କିଏ ଗାଡ଼ିରେ, କିଏ ଅବା ପାଦରେ ଚାଲିଲେ । ହିଲିନ ଗୋଟିଏ ଘୋଡ଼ାରେ ବସିଥାଏ ଓ ଗୋଟିଏ ଗାଡ଼ିରେ ତାର ଜିନିଷ ପତ୍ର ଲଦା ହୋଇ ଯାଉଥାଏ । ସେଠାରୁ ଷୋଳ ମାଇଲ ଗଲେ ନିକଟବର୍ତ୍ତୀ ଶିବିର ପଡ଼ିବ । ସେମାନଙ୍କୁ ଧୀରେ ଧୀରେ ଯିବାକୁ ହେଉଥିଲା । କେତେବେଳେ ସୈନ୍ୟମାନେ ରହିଯାଉଥିଲେ; କେତେବେଳେ ବା କାହା ଗାଡ଼ିର ଚକ ବାହାରିପଡୁଥିଲା; କେତେବେଳେ ଅବା କାହାର ଘୋଡ଼ା ଚାଲୁ ନଥିଲା । ଜଣେ ରହିଗଲେ ସମସ୍ତଙ୍କୁ ରହିବାକୁ ପଡୁଥିଲା ।

ଅଧେ ବାଟ ଗଲା ବେଳକୁ ଦିନ ଦିପହର ଗଡ଼ିଯାଇଥିଲା । ଗରମ ଦିନ, ପବନରେ ଧୂଳି ଉଡ଼ୁଥାଏ । ସୂର୍ଯ୍ୟଙ୍କ ଉତ୍ତାପରୁ ରକ୍ଷା ପାଇବା ପାଇଁ ବିଶ୍ରାମ ନେବା ସକାଶେ କୌଣସି ଆଶ୍ରୟ ସ୍ଥାନ ନ ଥିଲା । ଚାରିପାଖେ ବିସ୍ତୃତ ପ୍ରାନ୍ତର; ରାସ୍ତା ଧାରରେ କୌଣସିଠାରେ ଗୋଟିଏ ଗଛ ବା ବୁଦା ମଧ୍ୟ ନ ଥିଲା ।

ଝିଲିନ ସମସ୍ତଙ୍କ ଆଗରେ ଘୋଡ଼ାରେ ବସି ଯାଉଥିଲା । ଗାଡ଼ି ସବୁ ପଛରେ ପଡ଼ିଯାଇଥିବାରୁ ସେ ଅପେକ୍ଷା କରି ରହିଲା । ଗାଡ଼ି ଆସିଲା ବେଳକୁ ପଛରୁ ସୈନ୍ୟମାନଙ୍କର ଶିଙ୍ଗାଧ୍ୱନି ଶୁଣାଗଲା । ଏଥିରୁ ସେ ଜାଣିଲା ଯେ ସୈନିକ ଦଳ ନ ଅସି ଅପେକ୍ଷା କରି ଅଛନ୍ତି । ତେଣୁ ସେ ମନେ ମନେ ଭାବିଲା, "ଏକୁଟିଆ ମୁଁ ଚାଲି-ଗଲେ ବରଂ ଭଲ ହୁଅନ୍ତା । ମୋର ଘୋଡ଼ାଟା ଖୁବ୍ ବେଗରେ ଦୌଡ଼ିପାରେ । ଯଦି ବା ତାତାରମାନେ ଆକ୍ରମଣ କରନ୍ତି, ତେବେ ବି ମୁଁ ଅଳ୍ପକ୍ଷଣରେ ପଳାଇଯାଇ ପାରିବି । ତଥାପି ଅପେକ୍ଷା କରିବା ନିରାପଦ ।"

ସେ ବସିଯାଇ ଏହିପରି ଚିନ୍ତା କରୁଥିବା ସମୟରେ ସୈନ୍ୟ-ବିଭାଗର ଜଣେ କର୍ମଚାରୀ ଘୋଡ଼ାରେ ବସି ତାହା ପାଖରେ ପହଞ୍ଚି-ଗଲା । ତାହାର ନାମ କଷ୍ଟିଲିନ୍ । ସେ ବନ୍ଧୁକଟିଏ ଧରିଥିଲା । ଝିଲିନ୍ ଓ କଷ୍ଟିଲିନ୍ ପୂର୍ବରୁ ପରସ୍ପରକୁ ଚିହ୍ନିଥିଲେ ।

କଷ୍ଟିଲିନ୍ କହିଲା, "ଚାଲ, ଆମେ ଦୁହେଁ ଅଲଗା ଚାଲିଯିବା, ଝିଲିନ୍ । ଏଠାରେ ଭୀଷଣ ଗରମ । ମୋତେ ଭୋକ ହେଲାଣି । ସୂର୍ଯ୍ୟ କିରଣ ଅସହ୍ୟ ବୋଧ ହେଉଛି । ମୋର କମିଜଟା ଝାଳରେ ଓଦା ହୋଇଗଲାଣି ।"

କଷ୍ଟିଲିନ୍ ଖୁବ୍ ବଳିଷ୍ଠ ଲୋକ, ଦେହଟା ଟିକିଏ ମୋଟା । ପ୍ରକୃତରେ ତା କପାଳରୁ ଝାଳ ଧାର ଧାର ହୋଇ ବୋହି ପଡ଼ୁ-ଥିଲା । ଝିଲିନ୍ ଟିକିଏ ଚିନ୍ତାକରି ପଚାରିଲା, "ତୁମ ବନ୍ଧୁକରେ ଗୁଳି ଭର୍ତ୍ତି ହୋଇଛି ?" କଷ୍ଟିଲିନ୍ ଉତ୍ତର କଲା, "ହଁ" ।

ଏବେ ଝିଲିନ୍ କଷ୍ଟିଲିନ୍ ସହିତ ଯିବାକୁ ସ୍ୱୀକୃତ ହେଲା । ସେ କହିଲା, "ହଉ, ଚାଲ, ଆମେ ଦୁହେଁ ଆଗରେ ଚାଲିଯିବା । କିନ୍ତୁ

ଗୋଟିଏ କଥା; ଦୁହେଁ ଏକ ସଙ୍ଗରେ ଯିବା, କେହି କାହାରକୁ ଛାଡ଼ିବା ନାହିଁ ।"

ଦୁହେଁ ଘୋଡ଼ାରେ ବସି ପ୍ରାନ୍ତର ପଥରେ ଯିବାକୁ ଲାଗିଲେ । ସେମାନେ ରାସ୍ତାର ଦୁଇ ଧାର ଉପରେ ସତର୍କ ଦୃଷ୍ଟି ରଖିଥାନ୍ତି । ପ୍ରଶସ୍ତ ସମତଳ ଭୂମିରେ ସେମାନେ ବହୁ ଦୂରକୁ ଦେଖିପାରୁଥାନ୍ତି । ସମତଳ ଭୂମି ଅତିକ୍ରମ କରିବା ପରେ ରାସ୍ତାଟି ଦୁଇଗୋଟି ପାହାଡ଼ର ମଝିରେ ଯାଇଥିଲା । ଝିଲିନ୍ କହିଲା, "ଆମେ ଆଗ ଗୋଟାଏ ପାହାଡ଼ ଉପରକୁ ଉଠି ଚାରିଆଡ଼ ଦେଖିନେବା । ତା ନହେଲେ ତାତାରମାନେ ହଠାତ୍ ଆସି ଆମକୁ ଆକ୍ରମଣ କରିପାରନ୍ତି । ଆଗରୁ ସାବଧାନ ହୋଇ ପାରିବା ନାହିଁ ।"

କିନ୍ତୁ କଷ୍ଟିଲିନ୍ ଉତ୍ତର କଲା, "ପାହାଡ଼ ଉପରକୁ ଉଠି ଦେଖିବା କି ଦରକାର ? ଆମେ ଚାଲିଯିବା ।"

ଝିଲିନ୍‌ର ସନ୍ଦେହ ବଢ଼ିଥିଲା । ସେ ଏଥିରେ ରାଜି ନ ହୋଇ କହିଲା, "ନା, ଅବସ୍ଥା ନ ଜାଣି ଯିବା ନାହିଁ । ଅଚ୍ଛା, ତୁମେ ଏଇଠାରେ ଅପେକ୍ଷା କରି ରହ । ମୁଁ ପାହାଡ଼ ଉପରକୁ ଉଠି ଚାରିଆଡ଼ ଦେଖିଆଏ ।" ଏହା କହି ଝିଲିନ୍ ଘୋଡ଼ାକୁ ପାହାଡ଼ ଉପରକୁ ଚଲାଇଲା । ଘୋଡ଼ାଟି ବେଶ୍ ଭଲ; ଶିକାରକୁ ଗଲେ ଝିଲିନ୍ ଏହା ଉପରେ ଯାଏ । ସେ ଏହାକୁ ଶହେ ଟଙ୍କାରେ କିଣିଥିଲା । ଘୋଡ଼ାଟି ଖୁବ୍ କୌଶଳରେ ପାହାଡ଼ ଉପରକୁ ଉଠିଗଲା । ଶିଖରରେ ପହଞ୍ଚିବାକୁ ଅଳ୍ପ ଦୂର ଅଛି, ଏହି ସମୟରେ ସେ ମାତ୍ର ଶହେ ଗଜ ଦୂରରେ ତିରିଶ ଜଣ ଅଶ୍ୱାରୋହୀ ତାତାରଙ୍କୁ ଦେଖି ପାରିଲା । ତତ୍‌କ୍ଷଣାତ୍ ସେ ଘରକୁ ଓହ୍ଲାଇବା ପାଇଁ ଫେରିପଡ଼ିଲା । ଏଥି ମଧ୍ୟରେ ତାତାରମାନେ ମଧ୍ୟ ତାକୁ ଦେଖିପାରି ବନ୍ଧୁକ ଧରି

ତା ପଛରେ ଘୋଡ଼ା ଛୁଟାଇ ଦେଲେ । ରାସ୍ତା ପାଖରେ ପହଞ୍ଚି ସେ ଚିତ୍କାର କଲା, "କଷ୍ଟିଲିନ୍, ଶୀଘ୍ର ବନ୍ଧୁକ ଠିକ୍ କର ।"

ସେ ମନେ ମନେ ଘୋଡ଼ାକୁ କହୁଥିଲା, "ତୁ ମୋତେ ଏ ବିପଦରୁ ପାର କରି ନେଇଯାଆ । ତୁ ପଡ଼ିଗଲେ ଆମ ଦୁହିଁଙ୍କର ଜୀବନ ଯିବ । ବନ୍ଧୁକଟା ହାତରେ ପଡ଼ିଗଲେ ତାତାରମାନେ ମୋତେ ଜୀଅନ୍ତା ଧରି ନେଇ ଯାଇ ପାରିବେ ନାହିଁ ।"

ଏଣେ କଷ୍ଟିଲିନ୍ ତାତାରମାନଙ୍କୁ ଦେଖିଲା ମାତ୍ରେ ମୁହୂର୍ତ୍ତେ ଅପେକ୍ଷା ନ କରି ଯଥାଶକ୍ତି ବେଗରେ ଶିବିର ଆଡ଼କୁ ଘୋଡ଼ାକୁ ଦଉଡ଼ାଇଲା । ମଝିରେ ଘୋଡ଼ା ପେଟରେ ଚାବୁକ ପାହାର ଦେଉଥାଏ । ଘୋଡ଼ାଟା ଏତେ ବେଗରେ ଦଉଡ଼ୁଥାଏ ଯେ ଝିଲିନ୍ ଉଡ଼ୁଥିବା ଧୂଳି ଭିତରେ କେବଳ ତାର ଲାଞ୍ଜଟା ଏପାଖ ସେପାଖ ହେଉଥିବାର ଦେଖିପାରୁଥିଲା ।

କଷ୍ଟିଲିନ୍ ବନ୍ଧୁକ ନେଇ ପଳାଇଲା । ତେଣୁ ଝିଲିନ୍ ଆତ୍ମରକ୍ଷାର ଆଶା କରି ପାରିଲା ନାହିଁ । ତା ପାଖରେ କେବଳ ଖଣ୍ଡାଟିଏ ଥାଏ । ପଳାଇ ଯିବା ଆଶାରେ ସେ ଘୋଡ଼ାର ମୁହଁ ସୈନ୍ୟମାନଙ୍କ ଆଡ଼କୁ ବୁଲାଇଲା । କିନ୍ତୁ ହଠାତ୍ ଛଅ ଜଣ ତାତାର ଆଗେଇ ଆସି ତାର ପଥ ରୋଧ କଲେ । ସେମାନଙ୍କ ଘୋଡ଼ାଗୁଡ଼ିକ ଝିଲିନ୍‌ର ଘୋଡ଼ାଠାରୁ କୌଣସି ଗୁଣରେ ହୀନ ନ ଥିଲେ । ଝିଲିନ୍ ଅନ୍ୟ ଗୋଟାଏ ଦିଗକୁ ପଳାଇବାର ଚେଷ୍ଟା କଲା । ମାତ୍ର ତାର ଘୋଡ଼ା ଏତେ ବେଗରେ ଯାଉଥିଲା ଯେ ତାକୁ ହଠାତ୍ ବୁଲାଇ ହେଲା ନାହିଁ । ଫଳରେ ସେ ତାତାରମାନଙ୍କ ଆଗରେ ପଡ଼ିଗଲା । ଗୋଟିଏ ଧୂସର ବର୍ଣ୍ଣର ଘୋଡ଼ା ଉପରେ ଜଣେ ଦାଢିଆ

ଡାକାର ବସିଥିଲା । ସେ ବନ୍ଧୁକ ଟେକି, ଶିକାର କର ଝିଲନ୍ ପାଖକୁ ଲାଗି ଆସିଲା ।

ଝିଲନ୍ ମନେ ମନେ କହିଲା, "ତୁ ଗୋଟାଏ ଅସଲ ସଇତାନ । ମୁଁ ଜାଣିଛି ଆଜି ଆଉ ମୋତେ ଧରି ନେଇ ପାରିଲେ ତୁ ମୋତେ ଗୋଟାଏ ଗାଛରେ ଝୁଲାଇ ବନ୍ଧୁକରେ ପିଟିବୁ । ଏ କଥା ମୋତେ ଜଣା । ଜୀବନ ଥାଉ ଥାଉ ତୁ ମୋତେ ଧରି ନେଇ ପାରିବୁ ନାହିଁ ।"

ଝିଲନ୍ ବଳିଷ୍ଠ ବା ହୃଷ୍ଟପୁଷ୍ଟ ନ ଥିଲେହେଁ ଖୁବ୍ ସାହସୀ ଥିଲା । ସେହି ଡାକାର ଆଡ଼କୁ ସେ ଖଣ୍ଡା ଧରି ମାଡ଼ିଆସିଲା । ତାର ମନରେ ଥାଏ, "ହୁଏତ ଏହାକୁ ଘୋଡ଼ା ମଡ଼ାଇ ଦେବ କିମ୍ବା ଖଣ୍ଡାରେ ଅହତ କରିପାରିବ ।"

ଝିଲନ୍ ଏହି ଦାଢ଼ିଆ ଡାକାରଠାରୁ ମାତ୍ର ପାଞ୍ଚ ଛଅ ଫୁଟ ଦୂରରେ ଅଛି, ଏହି ସମୟରେ ଜଣେ ଡାକାର ତା ପଛଆଡ଼ୁ ଗୁଳି କଲା । ଘୋଡ଼ା ଦେହରେ ଗୁଳି ବାଜିବାରୁ ସେ ତଳେ ପଡ଼ିଗଲା; ତା ସଙ୍ଗେ ସଙ୍ଗେ ଝିଲନ୍ ମଧ୍ୟ ତଳେ ପଡ଼ିଗଲା ।

ସେ ତତ୍କ୍ଷଣାତ୍ ଉଠିବାକୁ ଚେଷ୍ଟା କଲା; କିନ୍ତୁ ମୁହୂର୍ତ୍ତକ ଭିତରେ ଦୁଇଟା ଡାକାର ତାକୁ ମାଡ଼ିବସି ପିଠିପଟେ ତାର ଦୁଇ ହାତକୁ ବାନ୍ଧିବାକୁ ଲାଗିଲେ । ଝିଲନ୍ ଜୋର୍ କରି ସେ ଦୁଇ ଜଣଙ୍କ ତଳକୁ ଫିଙ୍ଗି ଦେବା ବେଳକୁ ଆଉ ତିନି ଜଣ ଡାକାର ଘୋଡ଼ାରୁ ଡେଇଁପଡ଼ି ବନ୍ଧୁକରେ ତାର ମୁଣ୍ଡକୁ ଛେଚିବାକୁ ଲାଗିଲେ । ସେ ମୁହଁମାଡ଼ି ପଡ଼ିଗଲା । ଡାକାରମାନେ ତାକୁ ମାଡ଼ି ବସିଲେ; ତାର ଦୁଇ ହାତକୁ ମୋଡ଼ି ପିଠିପଟେ ଶକ୍ତ କରି

ଦଉଡ଼ିରେ ବାନ୍ଧଦେଲେ । ତାର ମୁଣ୍ଡରୁ ଟୋପି ଓ ଗୋଡ଼ରୁ ବୁଟ୍ କୋତା ବାହାର କରି ନେଇ ପୋଷାକ ପତ୍ର ଖୋଜିଲେ । ତାର ପୋଷାକ ଭିତରେ ସେଥିରେ ଥିବା ଟଙ୍କା ପଇସା ଓ ଘଣ୍ଟା ନେଇଗଲେ ।

ଝିଲିନ ତାର ଘୋଡ଼ାକୁ ଚାହିଁଲା । ଦେଖିଲା, ସେ ଯେପରି ତଳେ ପଡ଼ିଥିଲା, ସେହିପରି ପଡ଼ିଛି, ପିଣ୍ଡରେ ପ୍ରାଣ ନାହିଁ । ଦୁଷ୍ଟ ତାତାରମାନେ ତା'ଦେହରୁ ଜିନ, ଲଗାମ ପ୍ରଭୃତି କାଢ଼ି ନେଲେ । ଏହା ପରେ ସେହି ଦାଢ଼ିଆ ତାତାର ନିଜ ଘୋଡ଼ା ଉପରେ ବସିଲା । ଆଉ କେତେ ଜଣ ଝିଲିନ୍‌କୁ ଟେକି ତା ପଛରେ ଜିନ୍ ଉପରେ ରଖିଦେଲେ । ସେ କାଳେ ଖସି ପଡ଼ିବ, ସେଥିପାଇଁ ତାକୁ ତାତାରର ଅଣ୍ଟା ସହିତ ଗୋଟାଏ ଦଉଡ଼ିରେ ବାନ୍ଧ ଦେଲେ । ଏହା ପରେ ଅନ୍ୟ ତାତାରମାନେ ଘୋଡ଼ାରେ ବସି ପାହାଡ଼ ଆଡ଼କୁ ଚାଲିଗଲେ ।

ଦାଢ଼ିଆ ତାତାର ଘୋଡ଼ା ଚାଲିଲା । ଝିଲିନ ତା ପଛରେ ବସିଥାଏ । ତା ମୁଣ୍ଡ ବେଳେବେଳେ ତାତାରର ପିଠିରେ ପିଟି ହୋଇଯାଉଥାଏ । ତା ମୁଣ୍ଡରେ ଯେଉଁ ଆଘାତ ହୋଇଥିଲା, ତାହା ଫଳରେ ରକ୍ତ ବୋହି ତାର ଆଖି ଉପରେ ଜମାଟ ବାନ୍ଧିଥିଲା । ହାତ ବନ୍ଧା ହୋଇଥିବାରୁ ସେ ରକ୍ତକୁ ପୋଛି ଦେବାର ଉପାୟ ନ ଥିଲା ।

ଅନେକ ଦୂର ପର୍ଯ୍ୟନ୍ତ ପାହାଡ଼ ଉପରକୁ ଉଠିବାକୁ ହେଲା ଓ ତଳକୁ ଖସିବାକୁ ହେଲା । ଏହା ପରେ ଏକ ନଈ ପଡ଼ିଲା । ନଈ ପାର ହେବା ପରେ ସେମାନେ ଉପତ୍ୟକା ମଧ୍ୟରେ

ଥିବା ଗୋଟିଏ ରାସ୍ତାରେ ପହଞ୍ଚିଲେ । ତାତାର ତାଙ୍କୁ କେଉଁଠାକୁ ନେଉଛନ୍ତି ଜାଣିବା ପାଇଁ ଝିଲିନ ରାସ୍ତାକୁ ଚାହିଁଲା; ମାତ୍ର ରକ୍ତରେ ଆଖିପତା ଲଗିଯାଇଥିବାରୁ ସେ କିଛି ଦେଖି ପାରିଲା ନାହିଁ ।

ଅନ୍ଧାର ହୋଇ ଆସିଲା । ଅଳ୍ପ ଗୋଟିଏ ନଈ ପାର ହୋଇ ସେମାନେ ଗୋଟିଏ ପାହାଡ଼ ପାଖରେ ଗଲେ । ଟିକିଏ ଦୂରରୁ ଧୂଆଁର ଗନ୍ଧ ଆସୁଥିଲା ଓ କୁକୁରମାନେ ଭୁକୁଥିଲେ । ଏଥିରୁ ଝିଲିନ୍ ଅନୁମାନ କଲା, ସେମାନେ ଗୋଟିଏ ତାତାର ଗ୍ରାମରେ ପହଞ୍ଚି ଅଛନ୍ତି । ତାତାରମାନେ ଆପଣା ଆପଣା ଘୋଡ଼ାରୁ ଓହ୍ଲାଇ ପଡ଼ିଲେ । ପିଲାମାନେ ଦୌଡ଼ି ଆସି ଝିଲିନ ଚାରିପାଖେ ବେଢ଼ି ଯାଇ ଆନନ୍ଦରେ କୋଳାହଳ କଲେ । କେହି କେହି ତା ଉପରକୁ ଢେଲା ଫିଙ୍ଗିଲେ ।

ଦାଢ଼ିଆ ତାତାର ଝିଲିନ୍‌କୁ ଘୋଡ଼ା ଉପରୁ ତଳେ ରଖିଦେଇ ପିଲାମାନଙ୍କୁ ତଡ଼ିଦେଲା । ସେ ଚାକରକୁ ଡାକିବାରୁ ଜଣେ ତାତାର ଆସି ପହଞ୍ଚିଲା । ଲୋକଟାର ଦେହରେ ଖଣ୍ଡେ ଚିରା ଜାମା ଛଡ଼ା ଆଉ କିଛି ନ ଥାଏ । ଦାଢ଼ିଆ ତାତାରଠାରୁ ଆଦେଶ ପାଇ ଚାକରଟା ଘରକୁ ଯାଇ ଯୋଡ଼ାଏ ଗୋଡ଼କଡ଼ା ଆଣିଲା । ଏଥିରେ ଗୋଡ଼କୁ ଚିପି ଧରିବା ପାଇଁ ଦୁଇଟି କାଠର ଖୋପ ଥାଏ । ସେଥିରେ ଲାଗିଥିବା କଞ୍ଜିରେ ତାଲା ପଡ଼େ ।

ତାତାରମାନେ ଝିଲିନ୍‌ର ହାତ ଫିଟାଇ ଦେଲେ ଓ ଗୋଡ଼ରେ ଗୋଡ଼କଡ଼ା ପକାଇ ତାକୁ ଗୋଟାଏ କୁଡ଼ିଆକୁ ଟାଣି ଟାଣି ନେଇଗଲେ । ତାକୁ ଘର ଭିତରକୁ ଠେଲି ଦେଲା ପରେ କୁଡ଼ିଆର ତାଲା ବନ୍ଦ କରିଦିଆଗଲା । ଝିଲିନ୍ ଗୁଡ଼ାଏ ଅଳିଆ ଉପରେ ପଡ଼ିଗଲା । କିଛି ସମୟ ସେହିଠାରେ ପଡ଼ିରହିବା ପରେ ସେ ଘୁଞ୍ଚୁଡ଼ ଘୁଞ୍ଚୁଡ଼ ଟିକିଏ ପରିଷ୍କାର ଜାଗାକୁ ଯାଇ ବସିଲା ।

ସେଦିନ ରାତିରେ ଝିଲିନ୍‌ର ଆଦୌ ନିଦ ହେଲା ନାହିଁ । ସହଜେ ଖରା ଦିନ, ରାତି ଛୋଟ । ରାତି ପାହିବାକୁ ବେଶି ଡେରି ଲାଗିଲା ନାହିଁ । କାନ୍ଥର ଗୋଟାଏ କଣା ବାଟେ ଘର ଭିତରକୁ ଟିକିଏ ଆଲୁଅ ପଡ଼ିଲା । ଝିଲିନ୍ ଠିଆ ହୋଇ ହାତରେ କଣାଟାକୁ ଟିକିଏ ମେଲା କରିଦେଇ ସେ ବାଟେ ବାହାରକୁ ଗ୍ୱହିଁଲା । ପାହାଡ଼ ଆଡ଼କୁ ଗୋଟିଏ ରାସ୍ତା ପଡ଼ିଛି; ଡାହାଣ ପାଖକୁ ଗୋଟିଏ ତାତାର ପରିବାରର ଘର ଦ୍ୱାରମୁହଁରେ ଗୋଟାଏ କାଳିଆ କୁକୁର ଶୋଇଛି । କେତେଟା ଛେଳି ତାଳପତ୍ର ଖାଉଛନ୍ତି । ଅଳ୍ପ ସମୟ ପରେ ଦାଢ଼ିଆ ତାତାର ଜଣକ ଘରୁ ବାହାରିଆସିଲା । ସେ ରେଶମ ପୋଷାକ ପିନ୍ଧିଥିଲା । ତା ଅଣ୍ଟାରୁ ଗୋଟିଏ ଛୁରୀ ଓହଳିଥିଲା; ଛୁରୀର ବେଣ୍ଟ ରୁପାରେ ତିଆରି । ତାର ପାଦରେ ଜୋତା ଓ ମୁଣ୍ଡରେ ମେଣ୍ଢା ଚମଡ଼ାର ଡଲା ଟୋପି ଥିଲା । ଦାଢ଼ି କୁଣ୍ଡାଇ କୁଣ୍ଡାଇ ସେ ଗ୍ୱକରକୁ କିଛି ଆଦେଶ ଦେଇ କୁଆଡ଼େ ଗ୍ୱଲିଗଲା ।

ଏହି ସମୟରେ କେତେଗୁଡ଼ିଏ ପିଲା ଦଉଡ଼ି ଆସିଲେ । ସେମାନଙ୍କ ଦେହରେ ଖଣ୍ଡେ ଖଣ୍ଡେ କମିଜ ଛଡ଼ା ଆଉ କିଛି ନ ଥାଏ । ସେମାନେ କୁଡ଼ିଆ ପାଖକୁ ଆସି କାନ୍ଥର କଣାବାଟେ ଲମ୍ବା ବାଡ଼ି ପୂରାଇ କେଞ୍ଚିଲେ । ଝିଲିନ୍ ଚିତ୍କାର କରି ଉଠିବାରୁ ପିଲାମାନେ ପାଟିକରି ପଳାଇଗଲେ ।

ସେତେବେଳକୁ ଶୋଷରେ ଝିଲିନ୍‌ର ତଣ୍ଟି ଶୁଖିଯାଉଥିଲା । ସେ ଭାବିଲା, "ତାତାରମାନେ ଥରେ ଆସି ମୋତେ ଅନାନ୍ତେ ଭଲ ।"

କେହି ଜଣେ କୁଡ଼ିଆର କବାଟ ଖୋଲିବା ଜଣାଗଲା । ଆଉ ଜଣେ ଲୋକକୁ ସଙ୍ଗରେ ଘେନି ଦାଢ଼ିଆ ଟାଟାର କୁଡ଼ିଆ ଭିତରେ ପଶିଲା । ଅନ୍ୟ ଲୋକଟି ଦେଖିବାକୁ ବାଙ୍ଗର, ତାର ଆଖି ଦୁଇଟି କଳା ଓ ଗାଲ ଦୁଇଟି ଲାଲ୍ ଦିଶୁଥାଏ । ତା ମୁହଁରେ ହସ ଲାଗିରହିଥାଏ । ଏହି ଲୋକଟିର ପୋଷାକ ଦାଢ଼ିଆ ଟାଟାରର ପୋଷାକଠାରୁ ଅଧିକ ଚକଚକିଆ ଓ ମୂଲ୍ୟବାନ୍ ବୋଧ ହେଉଥାଏ । ସେ ଗୋଟିଏ ସୁନାଜରି ଲଗା ରେଶମ କୋଟ ପିନ୍ଧିଥିଲା । ତାର ଅଣ୍ଟାରେ ରୁପାବେଣ୍ଟର ଛୁରୀ, ପାଦରେ ରୁପାର କାମ ଥିବା ସୁନ୍ଦର ଚମଡ଼ାର ଜୋତା ଓ ମୁଣ୍ଡରେ ମେଣ୍ଢା ଚମଡ଼ାର ଧଳା ଟୋପି ଶୋଭାପାଉଥିଲା । ମାତ୍ର ତାର ଦେହର ରଙ୍ଗ ଟିକିଏ କଳା ଥିଲା ।

ଏହି ଲୋକଟି ଖୁବ୍ ଚଞ୍ଚଳ ଓ କର୍ମଠ । ସେ ଆସି ଝିଲିନ୍ ଆଗରେ ବସିଗଲା ଓ ତାର କାନ୍ଧରେ ହାତ ମାରି ନିଜ ଭାଷାରେ କଅଁଣ କହିଗଲା । ଝିଲିନ ସେଥିରୁ କିଛି ବୁଝି ପାରିଲା ନାହିଁ । ତା କଥା ଭିତରେ ସେ ବାରମ୍ବାର କହୁଥିଲା, "ସାବାସ ରୁସ୍, ସାବାସ୍ ରୁସ୍ ।" ଝିଲିନ୍ ଏହାର ଅର୍ଥ ବୁଝି ନ ପାରି ତାର ରୁଷୀୟ ଭାଷାରେ କହିଲା, "ପାଣି, ପାଣି, ମୋତେ ପିଇବା ପାଇଁ ପାଣି ଦିଅ ।"

ଲୋକଟି ସେହିପରି ହସି ହସି କଅଣ କହିଯାଉଥାଏ । ତା ଉତ୍ତରେ "ସାବାସ ରୁସ୍" ଶୁଣିବାକୁ ମିଳୁଥାଏ ।

ଝିଲିନ ଅନ୍ୟ ଉପାୟ ନ ଦେଖି ଓଠକୁ ଦେଖାଇ ଠାରରେ ବୁଝାଇବାକୁ ଚେଷ୍ଟା କଲା ଯେ ପିଇବା ପାଇଁ ତାର ପାଣି ଦରକାର । ଏଥର ଝିଲିନର ଉଦ୍ଦେଶ୍ୟ ବୁଝି ପାରି ଲୋକଟା ଡାକ ପକାଇଲା, "ଦୀନା, ଦୀନା ।"

ଡାକ ଶୁଣି ଗୋଟିଏ ବାର ବର୍ଷର ଝିଅ ଦଉଡ଼ ଅସିଲ । ଝିଅଟିର ବର୍ଣ୍ଣ କଳା, ଉଚ୍ଚତା କମ୍ ଓ ଦେହଟି ସରୁ । ତାର ଚେହେରା ଠିକ୍ ସେହି ଚାଷୀର ଚେହେରା ପରି । ଦେଖିଲାମାତ୍ରେ ଝିଲନ ଜାଣିପାରିଲା, ଏଇଟି ସେଇ ଚାଷୀର ଝିଅ । ବାପପରି ଝିଅର ଆଖି ଦୁଇଟି କଳା ଓ ମୁହଁଟି ସୁନ୍ଦର । ସେ ପାଇଜାମା ଓ କଳାରଙ୍ଗର ପୋଷାକ ପିନ୍ଧିଥିଲା । ତା ପାଦରେ ଜୋତା ଥିଲା । ଗୁଡ଼ିଏ ରୁଷୀୟ ରୁପାମୁଦ୍ରାର ହାର ତା ଗଳାରେ ଲମ୍ବିଥିଲା । ମୁଣ୍ଡର କଳା ବାଳଗୁଡ଼ିକ ରିବନ୍‌ରେ ବନ୍ଧା ହୋଇଥିଲା ଓ ସେଥିରେ ମଧ୍ୟ କେତେକ ରୁଷୀୟ ରୁପାମୁଦ୍ରା ଖଞ୍ଜାଯାଇଥିଲା ।

ବାପର ଆଦେଶ ପାଇ ସେ ଦଉଡ଼ିଗଲା ଓ ଅଳ୍ପ ସମୟ ପରେ ଗୋଟିଏ ପାତ୍ରରେ ପାଣି ଧରି ଆସିଲା । ସେ ଝିଲନ ହାତକୁ ପାତ୍ରଟି ବଢ଼ାଇଦେଇ ତା ଆଗରେ ବସିଗଲା । ଝିଲନ କିପରି ପାଣି ପିଉଛି ସେ ଅନାଇ ଦେଖୁଥାଏ । କୌଣସି ପଶୁ ପାଣି ପିଇଲା ବେଳେ ପିଲାଏ ଯେପରି ଆଗ୍ରହରେ ଚାହିଁରହନ୍ତି, ସେ ସେହିପରି ଝିଲନକୁ ଚାହିଁରହିଲା ।

ପାଣି ପିଇସାରି ଝିଲନ ଖାଲି ପାତ୍ରଟିକୁ ତା ହାତକୁ ବଢ଼ାଇବା ବେଳେ ସେ ଡେଇଁପଡ଼ି ପଛେଇଗଲା । ବାପ ତାର ଏହି ଭୟ ଦେଖି ହସି ଉଠିଲା । ଅଉ ଗୋଟାଏ କୌଣସି କାମରେ ତା ବାପ ପୁଣି ତାକୁ ପଠାଇଲା । ସେ ଖାଲି ପାତ୍ରଟି ନେଇ ଚାଲିଗଲା ଓ କିଛି ସମୟ ପରେ ଗୋଟିଏ କାଠ ଥାଳିଆରେ କିଛି ରୁଟି ଧରି ପହଞ୍ଚିଲା । ଏହାକୁ ସେ ଝିଲନର ହାତକୁ ବଢ଼ାଇଦେଇ ପୂର୍ବପରି ତା ଆଗରେ ବସି ତାର ଖାଇବା ଦେଖିବାକୁ ଲାଗିଲା ।

ତାତାରମାନେ କୁଡ଼ଆର ଗୃହ ବନ୍ଦକର ଚାଲିଗଲେ । କିଛି ସମୟ ପରେ ଜଣେ ସୈନିକର ଘର ଭିତରକୁ ଆସି ତାର ନିଜ ଭାଷାରେ ଝିଲନକୁ କିଅଣ କହିଲା । ଝିଲନ୍ ତାତାର ଭାଷା ବୁଝିପାରିଲା ନାହିଁ; କିନ୍ତୁ ତାର କହିବା ଭଙ୍ଗୀରୁ ଏତିକି ଜାଣିଲା ଯେ ସୈନିକଟି ତାକୁ ଅନ୍ୟ କୌଣସି ସ୍ଥାନକୁ ଯିବାପାଇଁ କହୁଛି ।

ଝିଲନ ସୈନିକର ପଛେ ପଛେ ଚାଲିଲା । ମାତ୍ର ଗୋଡ଼କଡ଼ା ଲାଗିଥିବାରୁ ସେ ଅତି କଷ୍ଟରେ ଧୀରେ ଧୀରେ ଚାଲୁଥାଏ । କୁଡ଼ଆରୁ ବାହାରି ସେ ଗୋଟିଏ ତାତାର ଗ୍ରାମ ଦେଖିପାରିଲା । ଗ୍ରାମରେ ମାତ୍ର ଅଠଦଶଟି ଘର । ଗୋଟିଏ ଘର ଆଗରେ ତିନୋଟି ଘୋଡ଼ା ଛିଡ଼ା ହୋଇଥାନ୍ତି । ସେମାନଙ୍କ ଉପରେ ଜିନ୍ ପଡ଼ିଥାଏ । ଛୋଟ ପିଲାମାନେ ଘୋଡ଼ାମାନଙ୍କ ଲଗାମ ଧରି ଛିଡ଼ା ହୋଇଥାନ୍ତି । ଏହି ସମୟରେ କଳାବର୍ଣ୍ଣର ତାତାର ଜଣକ ଘରୁ ବାହାରି ଝିଲନ୍ ଓ ସୈନିକକୁ ଭିତରକୁ ଡାକିଲା ।

ଝିଲନ ଘର ଭିତରକୁ ଗଲା । ଘରଟି ଦେଖିବାକୁ ସୁନ୍ଦର; କାନ୍ଥଗୁଡ଼ିକ ପାଲିଶ କରାଯାଇଛି । ଆଗ କାନ୍ଥକୁ ଲାଗି ଗୁଡ଼ିଏ ସୁନ୍ଦର ରଙ୍ଗିନ ବିଛଣା ରହିଛି । ଅନ୍ୟ କାନ୍ଥଗୁଡ଼ିକରେ ଦାମିକା ଗାଲିଚା ଓ ପରଦା ଝୁଲୁଛି । ତା ଉପରେ ସଜା ହୋଇଛି ବନ୍ଧୁକ, ଖଣ୍ଡା ପ୍ରଭୃତି ଅସ୍ତ୍ରଶସ୍ତ୍ର । ଏସବୁରେ ରୁପାର କାରୁକାର୍ଯ୍ୟ କରାଯାଇଅଛି । ଘରର ଗୋଟିଏ କୋଣରେ ଗାଲିଚା ଉପରେ ଗଦି ପଡ଼ିଛି । ପାଞ୍ଚୋଟି ଗଦି ଉପରେ ପାଞ୍ଚଜଣ ତାତାର ବସିଥିଲେ । ସେମାନଙ୍କ ଭିତରୁ ଜଣେ ହେଲା ସେହି ଦାଢ଼ିଆ ତାତାର ଓ ଅନ୍ୟ ଜଣେ ହେଲା କାଳିଆ, ବାଙ୍ଗରା ତାତାର । ଅନ୍ୟ ତିନିଜଣଙ୍କୁ ଝିଲନ ଚିହ୍ନି ନଥିଲା । ସେମାନେ କାଳିଆ ତାତାରର ଅତିଥି । କିଛି ସମୟ ଯାଏ

ତାତାରମାନେ ଅପଣା ଭିତରେ କଥାବାର୍ତ୍ତା ହେଲା ପରେ ଅତିଥି-ମାନଙ୍କ ମଧ୍ୟରୁ ଜଣେ ଝିଲିନକୁ ଋଷିୟ ଭାଷାରେ କହିବାକୁ ଆରମ୍ଭ କଲା । ପ୍ରଥମେ ସେ ଦାଢ଼ିଆ ତାତାରଙ୍କୁ ଦେଖାଇ କହିଲା, "ଏଇ ମହାଶୟ ତୋତେ ଧରି ଆଣିଥିଲେ । ଏବେ ସେ ତୋତେ ଏ ମହାଶୟଙ୍କୁ ଦେଇଅଛନ୍ତି ।" ଏହା କହି ସେ କାଳିଆ ତାତାର ଆଡ଼କୁ ହାତ ଦେଖାଇଲା । ତା ପରେ ପୁଣି କହିଲା, "ଏବେ ଏଇ ମହାଶୟ ହେଲେ ତୋର ମୁନିବ ।"

ଝିଲିନ ସବୁ ଶୁଣିଲା, ମାତ୍ର ଚୁପ୍ କରି ରହିଲା । କାଳିଆ ତାତାର ହସି ହସି ଝିଲିନଆଡ଼କୁ ହାତ ଦେଖାଇ କଅଣ କହିଲା । ମଝିରେ ମଝିରେ ସେ କହୁଥାଏ, "ଅଚ୍ଛା ରୁସ୍, ସାବାସ ରୁସ୍, ସୈନିକ ରୁସ୍ ।"

ଅତିଥି ଜଣକ ପୁଣି ଋଷିୟ ଭାଷାରେ କହିଲା, "ତୋର ନୂଆ ମୁନିବଙ୍କର ହୁକୁମ ହେଉଛି, ତୁ ତୋ ଘରକୁ ଚିଠି ଲେଖିଦେ ଯେ ସେମାନେ ତୋର ମୁକ୍ତିପାଇଁ ଟଙ୍କା ପଠାଇବେ । ଟଙ୍କା ପହଞ୍ଚିଲା ମାତ୍ରେ ତୋତେ ଛାଡ଼ିଦିଆଯିବ ।"

ଝିଲିନ ଟିକିଏ ଚିନ୍ତା କରି କହିଲା, "ମୋର ମୁକ୍ତିପାଇଁ ସେ କେତେ ଟଙ୍କା ଚାହୁଁଛନ୍ତି ?" ତାତାରମାନେ କିଛି ସମୟ କଥାବାର୍ତ୍ତା ହେଲେ । ତା'ପରେ ଅତିଥି କହିଲା, "ତିନି ହଜାର ଟଙ୍କା ।"

ଝିଲିନ ଏହା ଶୁଣି କହିଲା, "ନା, ମୁଁ ଏତେ ଟଙ୍କା ଦେଇପାରିବି ନାହିଁ ।"

ତାର ନୂଆ ମୁନିବ ଉଠିପଡ଼ି ହାତ ହଲେଇ ଝିଲିନକୁ କଅଣ ବୁଝାଏ କହିଲା । ଝିଲିନ ଯେ ତାର ଭାଷା ଜାଣେ ନାହିଁ ଏକଥା

ସେ ଭୁଲିଯାଇଥିଲା । ସେ ଯାହା କହୁଥିଲା, ଅଟଥି ତାକୁ ରୁଷୀୟ ଭାଷାରେ ବୁଝାଇ କହିଲା, "ତୋର ମୁନିବ ପଚାରୁଛନ୍ତି, ତୁ କେତେ ଦେଇପାରିବୁ ?"

ଝିଲନ ଭାବି ଭାବି କହିଲା, "ପାଞ୍ଚଶହ ଟଙ୍କା ।"

ପୁଣି ତାତାରମାନଙ୍କ ଭିତରେ ଆଲୋଚନା ଚାଲିଲା । କାଳିଆ ଜଣକ ଦାଢ଼ିଆ ତାତାରକୁ କଅଣ ଗୁଡ଼ାଏ ବଡ଼ପାଟିରେ କହିଲା । ଦାଢ଼ିଆ ଜଣକ ଖାଲି ଆଖି ମିଟିମିଟି କରୁଥାଏ ।

କିଛି ସମୟ ପରେ ସମସ୍ତେ ଚୁପ ହୋଇଗଲେ । ଅଟଥି କହିଲା, "ପାଞ୍ଚଶହ ଟଙ୍କାରେ ତୋର ମୁନିବ ଆଦୌ ସନ୍ତୁଷ୍ଟ ହେବେ ନାହିଁ । ସେ ତିନି ହଜାର ଟଙ୍କା ଚାହୁଁଛନ୍ତି । ସେଥିରୁ ଉଣାହେଲେ ଚଳିବ ନାହିଁ । ଘରକୁ ତିନିହଜାର ଟଙ୍କା ପଠାଇବା ପାଇଁ ନ ଲେଖିଲେ ତୋତେ ଗାତରେ ପକାଇ କୋରଡ଼ାରେ ପାହାର ଦିଆଯିବ ।"

ଝିଲନ ମନେ ମନେ ଚିନ୍ତା କଲା, "ହୁଁ, ଏଗୁଡ଼ାଙ୍କୁ ଯେତିକି ଡରିବି, ମୋର ଅବସ୍ଥା ସେତିକି ଖରାପ ହେବ ।"

ସେ ଛିଡ଼ାହୋଇ ପଡ଼ି କହିଲା, "ସେଇଟା ମଣିଷ ନୁହେଁ ଯେ ଗୋଟାଏ କୁକୁର । ତାକୁ କହିଦିଅ ଯେ ମୋତେ ଏପରି ଧମକାଇବାକୁ ଚେଷ୍ଟା କଲେ ମୁଁ ଟଙ୍କାପାଇଁ ମୋଟେ ଚିଠି ଲେଖିବି ନାହିଁ । ସେ ପଇସାଟିଏ ବି ପାଇପାରିବ ନାହିଁ । ତା ଭଳି କୁକୁରକୁ ମୋର ଡର ନଥିଲା କି ଏବେ ମଧ୍ୟ ନାହିଁ ।"

ଅଟଥି ଝିଲନର ଉତ୍ତର ତାତାର ମୁନିବକୁ ତାର ଭାଷାରେ ବୁଝାଇ ଦେଲା । ସେମାନଙ୍କ ଭିତରେ ପୁଣି କଥାକାଟି ଚାଲିଲା ।

ଅନେକ ବେଳ ଯାଏ ଉତ୍ତେଜିତ ଭାବରେ କଏ କଅଣ କହିଲ ।
ତାହା ପରେ କାଳଆ ତାତାର ଜଣକ ଉଠି ଝିଲନର ପାଖକୁ
ଲଗିଯାଇ ଖୁବ୍ ହସି ହସି କହିଲ, "ଜଗିଟ ରୁସ୍, ଜଗିଟ ରୁସ୍ ।"
ଝିଲନ ପରେ ଜାଣିପାରିଲ ଜଗିଟ ଶବ୍ଦର ଅର୍ଥ ହେଉଛି 'ସାହସୀ' ।

ଝିଲନଙ୍କୁ ଏହିପରି କହିସାରି ସେ ଅନୁଥିଙ୍କୁ କଛି କହିଲ ।
ଅନୁଥି ତାର ଅନୁବାଦ କରି ଝିଲନଙ୍କୁ କହିଲେ, "ହଜାରେ ଟଙ୍କା
ପାଇଲେ ସେ ସନ୍ତୁଷ୍ଟ ହେବେ ।"

ମାତ୍ର ଝିଲନ ତା କଥାରୁ ଟଳିଲ ନାହିଁ । ସେ କହିଲ, "ମୁଁ
ପାଞ୍ଚଶହରୁ ଅଧିକା ଦେଇପାରିବି ନାହିଁ ବୋଲି କହୁଛି । ତୁମେ
ମୋତେ ମାରି ପକାଇପାର । ତାହାହେଲେ କଛି ପାଇବ ନାହିଁ ।"

ତାତାରମାନଙ୍କ ମଧ୍ୟରେ କଛି ବେଳ ଯାଏ ପୁଣି ବିତର୍କ
ଚାଲିଲ । ତାହାପରେ ଚାକରକୁ କଛି ଆଣିବାକୁ ପଠାଇଦେଇ
ସେମାନେ ଅପେକ୍ଷା କରି ରହିଲେ । ଅଳ୍ପ ସମୟ ପରେ ଚାକର
ଫେରି ଆସିଲ । ତା ପଛରେ ଜଣେ ହୃଷ୍ଟପୁଷ୍ଟ ବଳିଷ୍ଠ ଲୋକ ।
ଲୋକଟିର ଦେହରେ ଛିଣ୍ଡା ଚିରା ପୋଷାକ । ତାର ଗୋଡ଼ରେ
ମଧ୍ୟ ଗୋଡ଼କଡ଼ା ପଡ଼ିଥାଏ ।

ଝିଲନ ଏହି ଲୋକଟିକୁ ଦେଖି ସ୍ତମ୍ଭୀଭୂତ ହୋଇଗଲ ।
ଏ ଯେ ତାର ସାଥି କଷ୍ଟିଲନ । ତେବେ କଷ୍ଟିଲନ ମଧ୍ୟ ତାରପରି
ଧରାପଡ଼ି ବନ୍ଦୀ ହୋଇଛି ।

ଦୁହିଁଙ୍କୁ ପାଖାପାଖି ବସାଇ ଦିଆଗଲ । ଯାହା ଯାହା
ଏଥିମଧ୍ୟରେ ଘଟିଯାଇଥିଲ, ସେ ବିଷୟରେ ଦୁହେଁ କଥାବାର୍ତ୍ତା
ହେଲେ । ଝିଲନ କପରି ଧରାହୋଇ ଆସିଥିଲ ତାହା କହିଲ ।

କହିଲେ ତାର ଦୁର୍ଦ୍ଦଶା ବର୍ଣ୍ଣନା କରି କହିଲେ, "ମୋ ଘୋଡ଼ାଟା ଅଟକି ରହିଗଲା । ମୁଁ ବନ୍ଧୁକ ଫୁଟାଇଲି, ମାତ୍ର ଗୁଳି ଅନ୍ୟଆଡ଼େ ଗୁଲିଗଲା । ଏଇ ଡାକୁଅ ତାହାର ମୋତେ ଧରିଆଣି ବନ୍ଦୀ କରି ରଖିଛି ।" ତାହାର ଜଣେକ ଏତକବେଳେ ଉଠି ପଡ଼ି କହିଲେକୁ କିଛି କହିଲା । ଅନ୍ତଥି ବୁଝାଇ ଦେଲା, "ସେ କହୁଛନ୍ତି, ଏବେ ସେ ତୁମ ଦୁହିଁଙ୍କର ମୁନିବ । ତୁମେ ଦୁହେଁ ତାଙ୍କର ବନ୍ଦୀ । ଯିଏ ଅଗ ଟଙ୍କା ଆଣିଦେବ, ସେ ଅଗ ମୁକ୍ତ ପାଇ ଯିବ ।" ଝିଲିନ ଅଡ଼କୁ ଚାହିଁ ସେ କହିଲା, "ତୁ ବୃଥା ରାଗି କରୁଛୁ । ତୋର ଏଇ ବନ୍ଧୁକୁ ଦେଖ, ସେ କେଡ଼େ ଧୀରସ୍ଥିର । ପାଞ୍ଚହଜାର ଟଙ୍କା ପଠାଇଦେବା ପାଇଁ ସେ ଘରକୁ ଚିଠି ଲେଖି ସାରିଛି । ସେଥିପାଇଁ ତାକୁ ଭଲ ଖାଇବାକୁ ଦିଆଯିବ; ତା ପ୍ରତି ଭଲ ବ୍ୟବହାର କରାଯିବ ।"

ଝିଲିନ ଉତ୍ତର କଲା, "ମୋର ବନ୍ଧୁଙ୍କର ଯାହା ଇଚ୍ଛା ସେ ତାହା କରିବେ । ହୁଏତ ତାଙ୍କ ଘରେ ବହୁତ ଧନ ଅଛି । ମୋର ଧନ ନାହିଁ । ମୁଁ ଯାହା କହୁଛି ତାହାଛଡ଼ା ଆଉ କିଛି କହିପାରିବି ନାହିଁ । ହୁଏତ ଇଚ୍ଛାକଲେ ତୁମେ ମୋତେ ମାରିଦେବ । କିନ୍ତୁ ମାରିଦେଲେ କିଛି ପାଇବ ନାହିଁ । ମୁଁ ପାଞ୍ଚଶ ଟଙ୍କାରୁ ବେଶି ପଠାଇବାପାଇଁ ଲେଖି ପାରିବି ନାହିଁ ।"

ସମସ୍ତେ ଚୁପ ହୋଇ ରହିଲେ । ହଠାତ୍ ଡାକୁଅ ତାହାର ଜଣେକ ଗୋଟିଏ ଛୋଟ ବାକ୍ସ ଭିତରୁ କାଳି, କଲମ ଓ କାଗଜ ବାହାର କରି ଝିଲିନ୍‌ର ହାତକୁ ବଢ଼ାଇ ଦେଲା ଓ ତା କାନରେ ହାତ ମାରି ଚିଠି ଲେଖିବାକୁ ଠାରିଲା । ସେ ପାଞ୍ଚଶହ ଟଙ୍କା ନେବାକୁ ରାଜି ବୋଲି ଜଣାପଡ଼ିଲା ।

ଝିଲିନ୍ ଅନ୍ତଥିକୁ କହିଲା, "ଟିକିଏ ଅପେକ୍ଷା କର । ତାକୁ କହିଦିଅ ଯେ ସେ ଆମକୁ ଭଲ କରି ଖାଇବାକୁ ଦେବ, ପିନ୍ଧିବାକୁ

ଭଲ ପୋଷାକ ଓ ଜୋତା ଦେବ; ଅଳ୍ପ ଅଳ୍ପ ଦୁହିଁଙ୍କୁ ଏହାଠି ରଖିବ । ତାହାହେଲେ ଆମ ମନ ଖୁସି ରହିବ । ଆମ ଗୋଡ଼ରୁ ଏ ଗୋଡ଼ କଡ଼ା ବାହାର କରି ଦେବାକୁ ହେବ ।" ହ୍ୱିଲନ୍ ଏହା କହି ତାର ମୁନିବ ଆଡ଼କୁ ଚାହିଁ ହସିଲା ।

ଅତଥି ତାତାରକୁ ଏସବୁ କଥା ବୁଝାଇ ଦେବାରୁ ସେ ହସିହସି ଯାହା କହିଲେ ଅତଥି ତାହା ବନ୍ଦୀ ଦୁହିଁଙ୍କୁ ବୁଝାଇ କହିଲେ, "ତୁମର ମୁନିବ କହୁଛନ୍ତି—ତୁମ ଦୁହିଁଙ୍କୁ ସେ ଖୁବ୍ ଭଲ ପୋଷାକ ପିନ୍ଧିବାକୁ ଦେବେ । ରଜା ପୁଅ ଭଳି ଖାଇବାକୁ ପାଇବ । ଦୁହେଁ ଯାକ ଗୋଟାଏ ଘରେ ରହିବାରେ ମଧ୍ୟ ଆପତ୍ତି ନାହିଁ । କେବଳ ତୁମର ଗୋଡ଼କଡ଼ା ଫିଟାଯାଇ ପାରିବ ନାହିଁ । ତାହା ହେଲେ ତୁମେ ପଳାଇ ଯାଇ ପାର । ତେବେ, କେବଳ ରାତରେ ଗୋଡ଼କଡ଼ା ଫିଟାଇ ଦିଆଯିବ ଓ ସକାଳେ ପୁଣି ବନ୍ଦ କରାଯିବ ।" ହ୍ୱିଲନ୍ କାନରେ କାନିଆ ତାତାର ପୁଣି ହାତ ମାରି ହସିହସି ଯାହା କହିଲା ତାର ଅର୍ଥ ହେଉଛି—ତୁ ଭଲ ତ ମୁଁ ଭଲ ।

ହ୍ୱିଲନ୍ ଚିଠି ଲେଖିଲା, ମାତ୍ର ଠିକଣାଟି ଭୁଲ କରି ଲେଖିଲା । ପ୍ରକୃତରେ ଚିଠିଟି ଘରେ ପହଞ୍ଚୁ ଏହା ତାର ଇଚ୍ଛା ନ ଥିଲା । ସେ ମନେ ମନେ ଭାବୁଥିଲା, "ଏଠାରୁ ଖସି ପଳାଇ ଯିବି ।"

ଦୁହିଁଙ୍କୁ ଘରକୁ ନିଆଗଲା । ଶୋଇବା ପାଇଁ କିଛି ନଡ଼ା, ପାଣି ପିଇବା ପାଇଁ ଗୋଟିଏ ପାତ୍ର, କିଛି ରୁଟି, ଯୋଡ଼ିଏ ପୁରୁଣା କୁରୁତା ଓ କେତେକ ପୁରୁଣା ବୁଟ୍ ଜୋତା ଆଣି ସେମାନଙ୍କୁ ଦିଆଗଲା । ବୋଧହୁଏ ଏହି କୁରୁତା ଓ ଜୋତା କେଉଁ ରୁଷୀୟ ସୈନିକଙ୍କ ମୃତ ଦେହରୁ ଅଣାଯାଇଥିଲା । ରାତରେ ସେମାନଙ୍କ

ଗୋଡ଼ରୁ ଗୋଡ଼ ବଢ଼ା ଫିଟାଇ ଦିଆଗଲା । ଘର ଭିତରେ ସେମାନଙ୍କୁ ରଖି ବାହାରେ ତାଲା ପକାହେଲା ।

ଏହାପରେ ଗୋଟିଏ ମାସ ବିତିଗଲା । ମୁନିବ ଯେତେବେଳେ ଆସେ ସେତେବେଳେ ତା ମୁହଁରେ ହସ । ମାତ୍ର ସେ ସେମାନଙ୍କୁ ରୁଟି ଛଡ଼ା ଆଉ କିଛୁ ଖାଇବାକୁ ଦେଉ ନ ଥିଲା । ବେଳେ ବେଳେ ଶୁଖିଲା ବାସି ରୁଟି ମଧ୍ୟ ଦେଉଥିଲା ।

ଘରୁ ଟଙ୍କା ନ ଆସିବାରୁ କଷ୍ଟିଲିନ୍ ଆଉ ଖଣ୍ଡେ ଚିଠି ଲେଖିଲା । କିଛି ନ କରି ସେ ଖାଲି ବସି ରହିଥାଏ ଓ କେବେ ଟଙ୍କା ଆସି ପହଞ୍ଚିବ ବୋଲି ଗୁହାଁଥାଏ ।

ଝିଲିନ୍‌ର ଚିଠି କେହି ପାଇବେ ନାହିଁ, ଏକଥା ସେ ଭଲ କରି ଜାଣିଥିଲା । ପୁଣି ଚିଠି ଲେଖିବ କାହିଁକି ? ସେ ଭାବିଲା, "ମୋତେ ଏଥିରୁ ମୁକୁଳାଇବା ପାଇଁ ମୋର ମାଆ କାହୁଁ ଏତେ ଟଙ୍କା ପାଇବ ? ମୁଁ ସୈନ୍ୟ ବିଭାଗରେ ଚାକିରି କରି ଯାହା ପଠାଉଥିଲି, ସେଇଥିରେ ସେ ଚଳୁଥିଲା । ପାଞ୍ଚଶ ଟଙ୍କା ଯୋଗାଡ଼ କରିବାକୁ ହେଲେ ସେ ସର୍ବସ୍ୱାନ୍ତ ହୋଇପଡ଼ିବ । ଟଙ୍କା ଦେଇ ମୁକ୍ତି ପାଇବା କଥା ମୋତେ ଛାଡ଼ିଦେବାକୁ ହେବ । ଭଗବାନ ମୋତେ ସହାୟ ହେଲେ ଏଠାରୁ ଖସି ପଳାଇଯିବି ।"

କିପରି ପଳାଇ ଯିବ ବୋଲି ଝିଲିନ୍ ସୁବିଧା ଖୋଜୁଥାଏ ।

ସେ ଗାଁ ଭିତରେ ବୁଲି ମୁହଁରେ ସିଟି ମାରୁଥିଲା; କୌଣସି କୌଣସି ଠାରେ ମାଟିରେ କଣ୍ଢେଇ ତିଆରି କରୁଥିଲା; କେଉଁଠାରେ ଅବା ବସି ଟୋକେଇ ବୁଣୁଥିଲା । ଏସବୁ କାରିଗରି କାମରେ ତାର ଭଲ ହାତ ଥିଲା ।

ଥରେ ସେ ଗୋଟିଏ କଣ୍ଢେଇ ତିଆରି କଲା । ତାର ନାକ, ହାତ, ଗୋଡ଼, ପାଦ ସବୁ ମଣିଷପରି ହୋଇଥାଏ । ତାକୁ ଗୋଟିଏ ତାତାର ପୋଷାକ ପିନ୍ଧାଇ ଘାଟ ଉପରେ ରଖିଦେଲା । ସ୍ତ୍ରୀଲୋକ ମାନଙ୍କ ସଙ୍ଗରେ ତା ମୁନବର ଝିଅ ଦୀନା ପାଣି ଆଣିବାକୁ ଯାଉ-ଥିଲା । ସେ କଣ୍ଢେଇଟିକୁ ଦେଖି ପାରି ସବୁ ସ୍ତ୍ରୀଲୋକଙ୍କୁ ଦେଖାଇଲା । ସେମାନେ ପାଣି ମାଠିଆ ତଳେ ରଖିଦେଇ ଏହି କଣ୍ଢେଇକୁ ଚାହିଁଲେ । ସେମାନଙ୍କୁ ଭାରି କୌତୁକ ଲାଗିଲା । ସମସ୍ତେ ଆନନ୍ଦରେ ହସିଲେ । ଝିଲିନ୍ କଣ୍ଢେଇଟିକୁ ତଳକୁ ନେଇ ଆସି ସେମାନଙ୍କୁ ଯାଚିଲା, ମାତ୍ର ତାହାଠାରୁ ଏଇଟିକୁ ନେବାପାଇଁ କେହି ସାହସ କଲେ ନାହିଁ । ତହୁଁ ସେ କଣ୍ଢେଇଟିକୁ ତଳେ ରଖିଦେଇ କୁଡ଼ିଆ ଭିତରକୁ ଚାଲିଗଲା । ଘର ଭିତରେ ବସି ସେ ଚାହିଁଥାଏ । ଦୀନା କଣ୍ଢେଇ ପାଖକୁ ଦୌଡ଼ିଯାଇ ଥରେ ଚାହିଁଲା ଓ ହଠାତ୍ କଣ୍ଢେଇଟିକୁ ଧରି ପଳାଇଗଲା ।

ସକାଳ ହେବାରୁ ଝିଲିନ୍ ଘରୁ ବାହାରି ଆସି ଚାରିଆଡ଼କୁ ଚାହିଁଲା । ଦୀନା ତାର ଘରୁ ବାହାରପଟ ପାହାଚ ଉପରେ ବସି-ପଡ଼ିଲା । ତାର ହାତରେ ସେଇ କଣ୍ଢେଇଟି । ଏଥିମଧ୍ୟରେ ସେ କେତେ ଖଣ୍ଡ ନାଲି କନାରେ ତାକୁ ସଜେଇ ଦେଇଥିଲା । ସେ ଏହାକୁ କୋଳରେ ଧରି ଛୋଟ ପିଲାଙ୍କୁ ଗେଲ କଲା ପରି କରୁଥିଲା । ଏହି ସମୟରେ ଜଣେ ବୁଢ଼ୀ ଘରୁ ବାହାରି ଆସି ରାଗରେ କଣ୍ଢେଇ-ଟିକୁ ଭାଙ୍ଗି ଟିକି ଟିକି କରିଦେଲା ।

କିନ୍ତୁ ଝିଲିନ୍ ଆଉ ଗୋଟିଏ ବଡ଼ କଣ୍ଢେଇ ତିଆରି କଲା । ଏଇଟି ଆଗଟିଠାରୁ ଅଧିକ ସୁନ୍ଦର ହୋଇଥିଲା । ସେଇଟିକୁ ସେ ଦୀନାକୁ ଦେଲା । ସେ ଦିନ ଦୀନା ଗୋଟିଏ ପାତ୍ର ଆଣି ଝିଲିନ୍

ପାଖରେ ରଖିଦେଲା ଓ ତାକୁ ଚାହିଁ ବସିଲା । ପାତ୍ରଟି ନେବାପାଇଁ ସେ ହସି ହସି ଝିଲନ୍‌କୁ ଇସାରା କଲା ।

ଦାନାର ଏତେ ଆନନ୍ଦ ଲାଗିଲା, ସେ ବୁଝି ପାରିଲା ନାହିଁ । ସେ ଭାବିଥିଲା, ପାତ୍ରରେ ପାଣି ଥିବ । ମାତ୍ର ଦେଖିଲା, ସେଥିରେ ଦୁଧ ଅଛି । ସେ ଦୁଧତକ ପିଇ ଦେଇ କହିଲା, "ଖୁବ୍ ଭଲ କାମ କରିଛୁ ।"

ଝିଲନ୍ ଦୁଧତକ ପିଇବାରୁ ଦାନାର ମନରେ ଭାରି ଆନନ୍ଦ । ସେ ଚିତ୍କାର କଲା, "ଅତିଭାରି ଭଲ, ଅତିଭାରି ଭଲ ।" ଆନନ୍ଦରେ ସେ ନାଚ ଡେଇଁବାକୁ ଲାଗିଲା । ଏହାପରେ ସେ ଖାଲି ପାତ୍ରଟି ନେଇ ପଳାଇଗଲା । ସେଇଦିନ ଠାରୁ ସେ ପ୍ରତିଦିନ ଲୁଚେଇ କରି କିଛି ଦୁଧ ଆଣି ଝିଲନ୍‌କୁ ପିଇବାକୁ ଦେଲା । ଥରେ ତାର ମୁନିବ-ଘରେ ମେଣ୍ଢାମାଂସ ତରକାରୀ ହୋଇଥିଲା । ସେଦିନ ଦାନା ଖଣ୍ଡିଏ ସିଝା ମାଂସ ତା ଜାମାତଳେ ଲୁଚେଇ ଆଣି ଝିଲନ୍ ପାଖରେ ପକାଇ ଦେଇ ଯାଇଥିଲା ।

ମୁନିବ ଘରେ ରୁଷିଆ ଛଅଣିର ଗୋଟିଏ ବଡ଼ ଘଣ୍ଟା ଥିଲା । ସେଇଟି ଭାଙ୍ଗି ଯିବାରୁ ଆଉ ଚାଲିଲା ନାହିଁ । ମୁନିବ ଘଣ୍ଟାଟି ଝିଲନ୍‌କୁ ଦେଖାଇଲା । ସେ କହିଲା, "ମୋତେ ଏଇଟିକୁ ଦେଲେ ମୁଁ ମରାମତି କରିଦେବି ।"

ଝିଲନ୍ ଛୁରୀ ସାହାଯ୍ୟରେ ଘଣ୍ଟାର ବିଭିନ୍ନ ଅଂଶ ବାହାର କଲା । କେତେକ ଅଂଶର ମଇଳା ଓ କଳଙ୍କ ପୋଛି ପୁଣି ସେଗୁଡ଼ିକୁ ଯଥାସ୍ଥାନରେ ଖଞ୍ଜିଦେଲା । ଘଣ୍ଟାଟି ପୂର୍ବପରି ଚାଲିଲା ।

ମୁନାବ ଝିଲନ୍ ଉପରେ ଭାରି ସନ୍ତୁଷ୍ଟ ହୋଇଗଲା ଓ ନିଜର ଖଣ୍ଡିଏ ପୁରୁଣା କୋଟ୍ ଆଣି ତାକୁ ପୁରସ୍କାର ଦେଲା । କୋଟର ଦେହଯାକ ଚିରା ହୋଇଯାଇଥିଲା; ତଥାପି ଝିଲନ୍ ତାହା ଗ୍ରହଣ କଲା । ଅନ୍ତତଃ ଶୀତଦିନ ରାତିରେ ଏହାକୁ ଦେହରେ ପକାଇ ହେବ ବୋଲି ଭାବି ସେ ନିଜକୁ ଆଶ୍ୱାସନା ଦେଲା ।

ଏହି ଘଟଣା ପରେ ଝିଲନ୍‌ର କାରିଗରି ବିଦ୍ୟା ତାତାର-ମାନଙ୍କ ମଧ୍ୟରେ ପ୍ରଚାର ହୋଇଗଲା । ଦୂର ଗାଁଆମାନଙ୍କରୁ ଅନେକ ଲୋକ ନାନା ଭଙ୍ଗା ଜିନିଷ ଆଣି ତାହା ହାତରେ ମରାମତି କରା-ଇଲେ । ମୁନାବ ଏଥିପାଇଁ ତାକୁ କିଛି ହତିଆର ଆଣିଦେଲା ।

ଥରେ ଜଣେ ତାତାର ବେମାର ପଡ଼ିଲା । କେତେ ଜଣ ଲୋକ ଆସି ଝିଲନ୍‌କୁ କହିଲେ, "ଚାଲ, ସେ ରୋଗୀକୁ ଭଲ କରି-ଦେବ ।" ଝିଲନ୍ ଚିକିତ୍ସା ବିଦ୍ୟା କିଛି ଜାଣି ନ ଥିଲା । ତଥାପି ସେ ବାଧ୍ୟ ହୋଇ ରୋଗୀ ଦେଖିବାକୁ ଗଲା । ସେ ଭାବିଲା, "ଲୋକଟା ଔଷଧ ନ ଖାଇଲେ ମଧ୍ୟ ଭଲ ହୋଇଯିବା ସମ୍ଭବ ।"

ଘରକୁ ଫେରି ଆସି ସେ ଗିନାଏ ପାଣିରେ କିଛି ବାଲି ମିଶାଇଲା । ତାତାରମାନଙ୍କ ଆଗରେ ସେ ପାଣିକୁ ଧରି ମିଛରେ ଗୁଣୁ ଗୁଣୁ ହେଲା । ତାହାପରେ ସେ ପାଣିକୁ ଜଣକୁ ଦେଇ କହିଲା, "ଏହାକୁ ନେଇ ରୋଗୀକୁ ପିଆଇ ଦେବ । ଏ ମନ୍ତୁରା ପାଣି ପିଇଲେ ସେ ଭଲ ହୋଇଯିବ ।" ତାହାହିଁ କରାଗଲା । ଦୈବ ଯୋଗକୁ ଲୋକଟିର ରୋଗ ଭଲ ହୋଇଗଲା ।

ଏଥି ମଧ୍ୟରେ ଝିଲନ୍ ଭଲଭାବରେ ସେମାନଙ୍କ ଭାଷା ଶିଖି ଯାଇଥିଲା । କେତେକ ତାତାର ତା ସଙ୍ଗେ ବନ୍ଧୁଭଳି ବ୍ୟବହାର

କରୁଥିଲେ । ସେମାନେ ତାକୁ ଅଭିଶପ୍ତ ବୋଲି ଭାବୁଥିଲେ । ତଥାପି ଅନ୍ୟ କେତେକ ତାକୁ ବନ୍ୟ ପଶୁପରି ଘୃଣା ଦୃଷ୍ଟିରେ ଦେଖୁଥିଲେ ।

ଏହାପରେ ଅନ୍ତତଃ ଗୋଟିଏ ମାସ ବିତିଗଲା । ଦିନ ଯାକ ସେ ଗାଆଁ ଭିତରେ ବୁଲୁଥାଏ, କିମ୍ବା ହାତଅର ଧରି ଗୋଟାଏ କଛି କାମ କରୁଥାଏ । ରାତିରେ ସମସ୍ତେ ଶୋଇପଡ଼ନ୍ତି । ଚାରିଆଡ଼ ନିସ୍ତବ୍ଧ ହୋଇଯାଏ । ସେତିକି ବେଳେ ଝିଲିନ୍‌ କାନ୍ଥ ତଳେ ଗୋଟିଏ ସୁଡ଼ଙ୍ଗ ଖୋଳିବାକୁ ଚେଷ୍ଟା କରେ । କାନ୍ଥ ତଳେ ପଥର ଥିବାରୁ ଖୋଳିବା ଅତି କଠିନ କାମ । ତଥାପି କେତେ ଦିନରେ ସେ ମଣିଷ ଗଳିବା ଭଳି ଗୋଟିଏ ସୁଡ଼ଙ୍ଗ ଖୋଳିଦେଲା ।

ସେ ଭାବିଲା, "କେଉଁ ବାଟେ ଗଲେ ମୁଁ ରୁଷୀୟମାନଙ୍କ ଶିବିରରେ ପହଞ୍ଚିବି ତାହା କିପରି ଜାଣିବି ? ସେତକ ଜାଣି ପାରିଲେ ସୁଡ଼ଙ୍ଗ ବାଟେ ବାହାରି ପଳାଇଯାଆନ୍ତି । କିନ୍ତୁ ତାତାରମାନେ ସେକଥା ମୋତେ କହିବେ ନାହିଁ । ମୁଁ ଅବା ପଚାରିବି କିପରି ? ବାଟଟା ମୋତେହିଁ ସ୍ଥିର କରିବାକୁ ହେବ ।"

ଦିନେ ତାର ମୁନିବ ଗାଆଁରେ ନ ଥିବା ବେଳେ ସେ ଖାଇ-ସାରି ଗାଆଁ ମୁଣ୍ଡ ପାହାଡ଼ରେ ଚଢ଼ି ଚାରିଆଡ଼କୁ ଚାହିଁବାକୁ ସ୍ଥିର କଲା । ମାତ୍ର ଏଥିରେ ମଧ୍ୟ ଅସୁବିଧା ଥିଲା । ଗାଆଁ ଛାଡ଼ି କୁଆଡ଼େ ଗଲେ ମୁନିବ ତା ପୁଅକୁ କହିଯାଏ—ଝିଲିନ୍‌ ଉପରେ ବରାବର ଆଖି ରଖିଥିବୁ, ସେ ଯେପରି ତୋ ଆଖି ଆଗରୁ କୁଆଡ଼େ ନ ଯାଏ । ତେଣୁ ଝିଲିନ୍‌ ଯେତେବେଳେ ପାହାଡ଼ ଆଡ଼କୁ ଯିବାକୁ ବସିଲା ପୁଅ ତା ପଛେ ପଛେ ଧାଇଁ ଯାଇ କହିଲା, "ଝିଲିନ୍‌, ସେଆଡ଼କୁ

ଯାଆନା । ବାପା ପର୍ବା ମନା କରି ଯାଇଛନ୍ତି । ଘରକୁ ଫେରିଅ; ନ ହେଲେ ମୁଁ ଗାଆଁର ଲୋକଙ୍କୁ ଡାକଦେବି ।”

ଝିଲିନ ତାକୁ ଭୁଲାଇବା ପାଇଁ କହିଲା, “ମୁଁ କଅଣ ବେଶି ଦୂରକୁ ଯାଉଛି ? ଟିକିଏ ଏଇ ପାହାଡ଼ ଉପରକୁ ଯାଉଛି । କେତେ ରୋଗୀ ଅସୁଛନ୍ତି । ଔଷଧ ପାଇଁ ପାହାଡ଼ରୁ କିଛି ଚେରମୂଳ ନେବାକୁ ହେବ । ତୁମ ଇଚ୍ଛା ହେଲେ ମୋ ସଙ୍ଗରେ ଅସ । ତୁମେ ଭାବୁଛ ମୁଁ ପଳାଇ ଯିବି । କିନ୍ତୁ ପଳାଇ ଯିବି କପରି ? ଦେଖୁନ, ମୋ ଗୋଡ଼ରେ ଗୋଡ଼କଡ଼ା ଲଗିଛି । କାଲି ତୁମ ପାଇଁ ଗୋଟାଏ ଧନୁ ଓ କିଛି ଶର ତିଆରି କରିଦେବି ।”

ଏଥିରେ ପିଲାଟି ଟିକିଏ ଭଲାଗଲା । ଝିଲିନ ଗୋଡ଼କଡ଼ା ସହିତ ପାହାଡ଼ ଉପରକୁ ଗଲା ଓ ତା ପଛେ ପଛେ ପିଲାଟି ମଧ ଗଲା । ଝିଲିନ୍ ବହୁ କଷ୍ଟରେ ପାହାଡ଼ର ଶିଖରକୁ ଉଠି ଚାରି ଅଡ଼ର ଅବସ୍ଥାନ ଲକ୍ଷ୍ୟ କଲା । ଦକ୍ଷିଣ ଦିଗରେ ଗୋଟାଏ ଉପତ୍ୟକା; ସେଥିରେ ପଲେ ଘୋଡ଼ା ଚରୁଥିଲେ । ଉପତ୍ୟକାର ଶେଷରେ ଅଉ ଗୋଟିଏ ଗ୍ରାମ ଦେଖାଯାଉଥିଲା । ତା ପଛକୁ ଗୋଟିଏ ପାହାଡ଼ । ସେ ପାହାଡ଼ଠାରୁ କିଛି ଦୂରରେ ଅଉ ଗୋଟିଏ ପାହାଡ଼ । ପାହାଡ଼ ପରେ ନୀଳ ବର୍ଣ୍ଣର ଜଙ୍ଗଲ ବିସ୍ତୃତ । ଜଙ୍ଗଲ ପଛକୁ ଖୁବ୍ ଦୂରରେ ପର୍ବତ ଶ୍ରେଣୀ ଥାକଥାକ ହୋଇ ଆକାଶକୁ ଉଠି ଯାଇଛି । ଉଚ୍ଚତମ ପର୍ବତଟି ବରଫରେ ଆବୃତ । ଶୁଭ୍ର ବର୍ଣ୍ଣର ଶୃଙ୍ଗମାନ ଗୋଟିକ ପଛକୁ ଗୋଟିଏ ଛିଡ଼ା ହୋଇଅଛନ୍ତି । ପୂର୍ବ ଓ ପଶ୍ଚିମ ଦିଗରେ ଅନେକ ପାହାଡ଼ ଦେଖିବାକୁ ମିଳିଲା । ପାହାଡ଼-ମାନଙ୍କର ମଧ୍ୟବର୍ତ୍ତୀ ସମତଳ ଭୂମିରେ ସ୍ଥାନେ ସ୍ଥାନେ ଗ୍ରାମମାନଙ୍କରୁ ଧୂଆଁ ଉଠୁଥିଲା ।

ସେ ମନେ ମନେ ଚିନ୍ତା କଲା, "ଏ ସବୁ ଟାଟାରମାନଙ୍କ ଦେଶ ।" ତତ୍ପରେ ସେ ଉତ୍ତରରେ ରୁଷୀୟ ଅଞ୍ଚଳ ଆଡ଼କୁ ଦୃଷ୍ଟି ପକାଇଲା । ପାହାଡ଼ର ପାଦ ଦେଶରେ ଗୋଟିଏ ନଦୀ ବହିଯାଉଛି । ସେ ରହୁଥିବା ଗ୍ରାମଟି ଏହି ନଦୀ କୂଳରେ । ଗୁଡ଼ିଏ ଛୋଟ ଛୋଟ ବଗିଚା ଗ୍ରାମଟିକୁ ବେଢ଼ି ରହିଛି । କେତେକ ସ୍ତ୍ରୀଲୋକ ଲୁଗା ଧୋଇବାକୁ ଆସି ନଈକୂଳରେ ବସିଥିଲେ । ସେମାନେ ତାକୁ କଣ୍ଢେଇ ପରି ଦିଶୁଥିଲେ । ଗ୍ରାମ ପାର ହେଲେ ଗୋଟିଏ ପାହାଡ଼, ଏଇଟି ଦକ୍ଷିଣରେ ଥିବା ପାହାଡଠାରୁ ଛୋଟ । ଏ ପାହାଡ଼ ପରେ ଆହୁରି ଦୁଇଟି ପାହାଡ଼ । ପାହାଡ଼ ଦୁଇଟି ଗଛଲତାରେ ଆବୃତ । ଦୁଇ ପାହାଡ଼ ମଝିରେ ଏକ ସମତଳ ଭୂମି । ସମତଳ ଭୂମିର ଅପର ପାର୍ଶ୍ୱରେ ଖୁବ୍ ଦୂରରେ ଧୂଆଁ ପରି କଅଣ ଦେଖାଯାଉଥିଲା ।

ଶିବିରରେ ଥିଲାବେଳେ ସୂର୍ଯ୍ୟ କେଉଁଠାରେ ଉଦୟ ହୋଇ କେଉଁଠାରେ ଅସ୍ତ ଯାଉଥିଲେ ତାହା ମନେପକାଇବାକୁ ଝିଲିନ ଚେଷ୍ଟାକଲା । ଧୂଆଁ ଉଠୁଥିବା ସ୍ଥାନଟି ଯେ ରୁଷୀୟ ସୈନ୍ୟମାନଙ୍କର ଶିବିର ଏ ବିଷୟରେ ତାର ଆଉ ସନ୍ଦେହ ରହିଲା ନାହିଁ । ଏ ଗ୍ରାମରୁ ପଳାଇବା ପରେ ତାକୁ ଏହି ଦୁଇ ପାହାଡ଼ର ମଧ୍ୟବର୍ତ୍ତୀ ସମଭୂମି ଉପରେ ଯିବାକୁ ହେବ ।

ସୂର୍ଯ୍ୟ ଅସ୍ତ ହୋଇ ଆସୁଥିଲେ । ବରଫାବୃତ ପର୍ବତଗୁଡ଼ିକର ଶୁଭ୍ରବର୍ଣ୍ଣ ଶିଖର ରକ୍ତିମ ହୋଇଗଲା; ପାହାଡ଼ ଗୁଡ଼ିକ କୃଷ୍ଣବର୍ଣ୍ଣ ଦେଖାଗଲେ । ସମଭୂମି ଉପରେ କୁହୁଡ଼ିର ଆବରଣ ଖେଳିଗଲା । ଯେଉଁଠାରେ ରୁଷୀୟ ଶିବିର ଅଛି ବୋଲି ସେ ଅନୁମାନ କରିଥିଲା, ସୂର୍ଯ୍ୟାସ୍ତ ସଙ୍ଗେ ସଙ୍ଗେ ସେଠାରେ ନିଆଁର ଶିଖା ଜଳୁଥିଲା ପରି ବୋଧ ହେଲା ।

ବହୁତ ଡେରି ହୋଇ ଯାଉଥିବାରୁ ପିଲାଟି ବାରମ୍ବାର କହୁଥିଲା, "ଝିଲିନ, ଅ, ଘରକୁ ଯିବା ।" କିନ୍ତୁ ଘରକୁ ଯିବା ପାଇଁ ଝିଲିନର ମନ ନ ଥିଲା ।

ଯାହା ହେଉ ଶେଷରେ ଦୁହେଁ ଯାକ ଘରକୁ ଫେରିଗଲେ । ଝିଲିନ ମନେମନେ ଭାବିଲା, "ଏବେ ବାଟ ଜଣା ପଡ଼ିଗଲା । ପଳାଇବାର ସମୟ ଉପସ୍ଥିତ ।" ସେହିଦିନ ରାତିରେ ପଳାଇବା ତାର ଇଚ୍ଛା ଥିଲା; ମାତ୍ର ତା ଦୁର୍ଭାଗ୍ୟରୁ ଠିକ୍ ସେହିଦିନ ତାତାର-ମାନେ ଗ୍ରାମକୁ ଫେରି ଆସିଲେ । ତେଣୁ ତାର ସେଦିନ ପଳାଇ ଯିବା ବନ୍ଦ ହେଲା ।

ଏହି ଘଟଣାର ଗୃହଦିନ ପରେ ଝିଲିନ ଦେଖିଲା, ତାତାର-ମାନେ ପୁଣି ଗାଆଁରୁ କୁଆଡ଼େ ଯିବା ପାଇଁ ସଜ ହେଉଛନ୍ତି । ପ୍ରାୟ ଦଶ ଜଣ ପର୍ଯ୍ୟନ୍ତ ତାତାର ନିଜ ନିଜ ଘୋଡ଼ାରେ ବସି ଗାଆଁରୁ ଚାଲିଗଲେ । କିନ୍ତୁ ତାର ମୁନିବ କୁଆଡ଼େ ନ ଯାଇ ଘରେ ରହିଲା ।

କୃଷ୍ଣପକ୍ଷ ହୋଇଥିବାରୁ ଅନ୍ଧାର ରାତି । ଝିଲିନ ଠିକ୍ କଲା— ଆଜି ଏଇ ଅନ୍ଧାର ରାତିରେ ପଳାଇବା ସୁବିଧା । ସେ ତାର ଏହି ଅଭିପ୍ରାୟ କଷ୍ଟିଲିନକୁ ଜଣାଇଲା । କିନ୍ତୁ କଷ୍ଟିଲିନ ଭୟ କଲା ।

ସେ କହିଲା, "ପଳାଇବା କିପରି ? ବାଟ ସୁଦ୍ଧା ଆମକୁ ଜଣା ନାହିଁ । କୁଆଡ଼େ ଯିବା ?"

ଝିଲିନ ଉତ୍ତର କଲା, "ସେଥିପାଇଁ ଚିନ୍ତା ନାହିଁ । ମୁଁ ବାଟ ଜାଣିଛି ।"

କଷ୍ଟିଲିନ୍ ପୁଣି ଯୁକ୍ତି କଲା, "ତୁମେ ବାଟ ଜାଣିଥିଲେ ମଧ୍ୟ ରାତିକ ଭିତରେ ଆମେ କେବେ ହେଲେ ରୁଷୀୟ ଶିବିରରେ ପହଞ୍ଚି ପାରିବା ନାହିଁ ।"

ଝିଲିନ୍ ବୁଝାଇଲା, "ଯଦି ଗାତକ ଭିତରେ ପହଞ୍ଚି ନ ଯାରିବା, ତେବେ ଜଙ୍ଗଲ ଭିତରେ ଲୁଚି ଶୋଇ ପଡ଼ିବା । ପରେ ପୁଣି ଯିବା । ଦେଖ, ମୁଁ କିଛି ଖାଦ୍ୟ ସାଇତି ରଖିଛି । ଏଠି ଅଉ ରହିବାରେ କି ଲାଭ ? ତୁମ ଘରୁ ଟଙ୍କା ଆସିଲା ତ ଭଲ; କିନ୍ତୁ ଯେବେ ସେମାନେ ଟଙ୍କା ଯୋଗାଡ଼ କରି ନ ପାରନ୍ତି ତେବେ ତୁମ ଦଶା କଅଣ ହେବ ଥରେ ଭାବି ଦେଖ । ତାତାରମାନେ ଟଙ୍କା ଆସିବା ପାଇଁ ଅପେକ୍ଷା କରି କରି ରାଗି ଗଲେଣି । ଏବେ ଆମମାନଙ୍କୁ ମାରି ପକାଇବା ସେମାନଙ୍କର ବିଚାର ।"

କଷ୍ଟିଲିନ ଟିକିଏ ଚିନ୍ତା କରି କହିଲା, "ହେଉ, ଚାଲ, ଆଜି ରାତିରେ ପଳାଇବା ।"

ଝିଲିନ୍ ସୁଡ଼ଙ୍ଗବାଟେ ଗଳିଯାଇ ବାଟଟିକୁ ଟିକିଏ ଓସାରିଆ କରିଦେଲା, ଯେପରି କଷ୍ଟିଲିନ୍ ମଧ୍ୟ ସେଇବାଟେ ବାହାରି ଯାଇ ପାରିବ । ତା ପରେ ଦୁହେଁଯାକ ଚୁପ୍ ହୋଇ ଗାଆଁର ସମସ୍ତେ ଶୋଇ ପଡ଼ିବା ପର୍ଯ୍ୟନ୍ତ ଅପେକ୍ଷା କଲେ ।

ଗାଆଁ ନିଶୂନ ହୋଇଯିବାରୁ ଝିଲିନ୍ ସୁଡ଼ଙ୍ଗବାଟେ ବାହାରି ଆସି ଚୁପ୍‌ଚାପ୍ କଣ କଷ୍ଟିଲିନ୍‌କୁ ସେଇବାଟେ ଗଳି ବାହାରକୁ ଚାଲି ଆସିବାକୁ କହିଲା । କିନ୍ତୁ ସେ ଆସିଲା ବେଳକୁ ତା ପାଦ ବାଜି ଖଣ୍ଡେ ପଥର ଖସିପଡି ଶବ୍ଦ କଲା । ମୁନିବର ଗୋଟାଏ ଜଗୁଆଳି କୁକୁର ଥିଲା । ତାର ନାଁ ଉଲିଆସିନ । କେତେ ଦିନ ହେଲା ଝିଲିନ୍ ଏଇ କୁକୁରଟିକୁ ଖୁବ୍ ଆଦର କରି ଅପଶାର କରି ରଖିଥିଲା । ଶବ୍ଦ ଶୁଣିଲା କ୍ଷଣି ଉଲିଆସିନ ଭୁକି ଉଠିଲା; ସଙ୍ଗେ ସଙ୍ଗେ ଅନ୍ୟ କୁକୁର ମାନେ ମଧ୍ୟ ଉଠିପଡ଼ି ଭୁକିଲେ । ଝିଲିନ୍ ତାକୁ 'ତୁ ତୁ' କରି ଡାକି ଖଣ୍ଡିଏ ରୁଟି ପକାଇଦେଲା । ସେ ଆଗରୁ ଝିଲିନ୍‌କୁ ଭଲକରି

ଚାହିଁ ଥିଲା । ଏବେ ତାହାକୁ ଦେଖି ଓ ତାର ସ୍ୱର ଶୁଣି ଚୁପ୍ ହୋଇଗଲା ଓ ରୁଟି ଖଣ୍ଡିକ ଖାଇବାରେ ଲାଗିଲା ।

କିନ୍ତୁ ଏତିକରେ ବିପଦ ଗଲା ନାହିଁ । ମୁନିବ କୁକୁରର ଭୁକିବା ଶୁଣିପାରିଥିଲା । ସେ ଘର ଭିତରେ ଶୋଇ ରହି ପାଟିକଲା, "ଜିଲ୍‌ଅସିନ୍, ହେଉ ହେଉ ।" ଏଥି ମଧ୍ୟରେ ଝିଲିନ୍ କୁକୁରର କାନ ପାଖ ଅଉଁସି ଦେଲା । ତେଣୁ ସେ ଚୁପ୍ ହୋଇ ଝିଲିନ୍‌ର ଗୋଡ଼ରେ ଘଷି ହେଲା ।

କିଛି ସମୟ ଯାଏ ଦୁହେଁଯାକ ତୂନି ହୋଇ କାନ୍ଥ ମୂଳେ ବସିଲେ । ସବୁଆଡ଼ ପୁଣି ନିଃଶବ୍ଦ ହୋଇଗଲା । ଘୋର ଅନ୍ଧାର ରାତି; କେବଳ ତାରାମାନେ ଆକାଶରେ ଜକ୍‌ଜକ୍ ହେଉଥିଲେ । ଦ୍ୱିତୀୟା ତିଥିର ଚନ୍ଦ୍ର ପାହାଡ଼ ପଛପଟେ ବୁଡ଼ିଗଲେ । ଉପତ୍ୟକାରେ ଧଳା କୁହୁଡ଼ି ଦେଖାଯାଉଥିଲା ।

ଝିଲିନ୍ ତାର ସାଥିକୁ କହିଲା, "ଭାଇ, ଏବେ ଚାଲ ଯିବା ।"

ଦୁହେଁ ଯାକ ଗାଁ ପାର ହୋଇ ପାହାଡ଼ ତଳେ ତଳେ ନଈ କୂଳରେ ପହଞ୍ଚିଲେ । ନଈଟା ପାର ହୋଇ ଉପତ୍ୟକାର ସମତଳ ଭୂମିରେ ଚାଲିଲେ । ଖୁବ୍ କୁହୁଡ଼ି ପଡ଼ିଥିଲା ସତ, କିନ୍ତୁ କେବଳ ଭୂଇଁ ପାଖରେ କୁହୁଡ଼ି ଥିଲା । ଚାରି ପାଞ୍ଚ ଫୁଟ ଉପରକୁ ଆଉ କୁହୁଡ଼ି ନ ଥିଲା । ତେଣୁ ତାରାମାନଙ୍କର ଆଲୋକ ସ୍ପଷ୍ଟ ଦେଖାଯାଉଥିଲା । ଏହି ତାରାମାନଙ୍କୁ ଚାହିଁ ଝିଲିନ୍ ତାର ଗନ୍ତବ୍ୟପଥ ସ୍ଥିର କରୁଥାଏ । କୁହୁଡ଼ି ଯୋଗେ ଥଣ୍ଡା ହୋଇ-ଥିବାରୁ ଚାଲିବାରେ କଷ୍ଟ ହେଉ ନ ଥିଲା । କିନ୍ତୁ ବୁଟ୍ ଜୋତା ଯୋଡ଼ିକ ଛିଣ୍ଡା ହୋଇଥିବାରୁ ଚାଲିଲା ବେଳକୁ ଅସୁବିଧା ଘଟୁଥିଲା । ଝିଲିନ୍ ନିଜର ଜୋତା ଯୋଡ଼ାକ ପାଦରୁ କାଢ଼ି ଫିଙ୍ଗି ଦେଲା ଓ ଖାଲି ପାଦରେ ଚାଲିଲା । କଷ୍ଟିଲିନ୍ ପଛରେ ପଡ଼ି ଯାଉଥାଏ ।

ସେ ଡାକିଲା, "ଝିଲନ୍, ଟିକିଏ ଧୀରେ ଚାଲ । ଏ ଜୋତା ଯୋଗେ ମୋ ପାଦରେ ଫୋଟକା ହୋଇଗଲାଣି ।"

ଝିଲନ୍ କହନ୍ତି, "ଜୋତାକୁ ଫିଙ୍ଗିଦେଲେ ସହଜରେ ଚାଲିପାରିବ ।"

କଷ୍ଟିଲିନ୍ ଜୋତାକୁ ତଳେ ଫିଙ୍ଗିଦେଇ ଖାଲି ପାଦରେ ଚାଲିବାକୁ ଲାଗିଲା ; କିନ୍ତୁ ଏଥିରେ ତାର ଯେ ବେଶୀ ସୁବିଧା ହେଲା, ତାହା ନୁହେଁ । ବାଟର ପଥରଗୁଡ଼ାକ ଫୋଟକାରେ ବାଜିବାରୁ ଘାଆ ହୋଇଗଲା । ତେଣୁ ସେ ପୂର୍ବି ପଛରେ ପଡ଼ିଲା । ଝିଲନ୍ କହିଲା, "ଭାଇ, ଚାଲି ଆସ । ଗୋଡ଼ ଘାଆକୁ ଚାହିଁଲେ ଚଳିବ ନାହିଁ । ଆଜି ଗୋଡ଼ରେ ଘାଆ ହେଲେ କାଲି ଭଲ ହୋଇଯିବ । କିନ୍ତୁ ତାତାରଙ୍କ ହାତରେ ଧରାପଡ଼ିଲେ ପ୍ରାଣ ଯିବ ।"

କଷ୍ଟିଲିନ୍ କିଛି ଉତ୍ତର ନ ଦେଇ ଚାଲିଲା । ମାତ୍ର ବାଟଯାକ 'ଆଃ, ଉହୁ' ଏହିପରି ହେଉଥାଏ । ଏହି ଉପତ୍ୟକାରେ ସେମାନଙ୍କର ଅନେକ ଦୂର ଯିବାର କଥା । ଯାଉ ଯାଉ ସେମାନଙ୍କ ଡାହାଣ ପାଖରୁ କୁକୁରମାନଙ୍କର ରାବ ଶୁଣାଗଲା । ଝିଲନ୍ ଠିଆ ହୋଇ ଚାରିଆଡ଼କୁ ଚାହିଁଲା । ତାପରେ ପାହାଡ଼ ଉପରକୁ ଉଠିଲା ।

ସେ କହିଲା, "ଓଃ, ଆମେ ବାଟ ଭୁଲି ଯାଇଥାଏଁ । ଡାହାଣକୁ ଆମର ଏତେଦୂର ଆସିବା ଠିକ୍ ହେଲା ନାହିଁ । ମୁଁ ପାହାଡ଼ ଉପରୁ ଯେଉଁ ଗାଆଁଟା ଦେଖିଥିଲି, ଏଇଟା ସେଇ ଗାଆଁ । ଚାଲ, ଆମେ ଫେରି ପଡ଼ ବାଆଁ ପାଖର ସେ ପାହାଡ଼ ଉପରକୁ ଯିବା । ପାହାଡ଼ ଉପରେ ନିଶ୍ଚୟ ଜଙ୍ଗଲ ଥିବ ।"

କଷ୍ଟିଲିନ୍ କହିଲା, "ଟିକିଏ ରହ, ମୁଁ ଆଗ ଟିକିଏ ନିଶ୍ୱାସ ନିଏଁ । ମୋ ଗୋଡ଼ଯାକ ଘାଆ ହୋଇ ରକ୍ତ ବୋହୁଲାଣି ।"

ଝିଲନ୍ କହିଲା, "ଭାଇ କଷ୍ଟିଲନ୍, ଘାଅକୁ ଖାତିର କରନା । ଘାଅ ପୁଣି ଶୁଖିଯିବ । ଏମିତ ଧୀରେ ପାଦ ପକାଇ ଚାଲ ।"

ଏହା କହି ଝିଲନ୍ ପଛକୁ ଫେରି ପଡ଼ିଲା ଓ ବାଁପାଖ ପାହାଡ଼ର ଜଙ୍ଗଲ ଆଡ଼କୁ ଉଠିଲା । କଷ୍ଟିଲନ୍ ପଛରେ ରହି ଉଃ, ଆଃ ହେଉଥାଏ । ତାକୁ ଚୁପ୍ ରହିବାକୁ କହି ଝିଲନ୍ ଉପରକୁ ଉଠିବାକୁ ଲାଗିଲା ।

ଦୁହେଁଯାକ ପାହାଡ଼ ଉପରକୁ ଉଠି ଏକ ଜଙ୍ଗଲରେ ପହଞ୍ଚିଲେ । କଣ୍ଟାବୁଦା ଭିତରେ କିଛି ଦୂର ଯିବାକୁ ପଡ଼ିବାରୁ ସେମାନଙ୍କର ପୋଷାକ ଚିରିଗଲା । ଯାହାହେଉ ଶେଷରେ ସେମାନେ ଗୋଟିଏ ବାଟ ପାଇ ସେଥିରେ ଚାଲିବାକୁ ଲାଗିଲେ ।

ଅଳ୍ପ ସମୟ ପରେ ସେମାନେ ଘୋଡ଼ାର ଟାପୁଶବ୍ଦ ଶୁଣିପାରିଲେ । ସେମାନେ ଛିଡ଼ା ହୋଇ ରହିଗଲେ । ଟାପୁର ଶବ୍ଦ ବନ୍ଦ ହୋଇଗଲା । ପୁଣି ସେମାନେ ଚାଲିବାକୁ ଆରମ୍ଭ କରିବାରୁ ଘୋଡ଼ା ଟାପୁର ଶବ୍ଦ ପୁଣି ଶୁଣାଗଲା । ସେମାନେ ଠିଆ ହେବା ମାତ୍ରେ ଶବ୍ଦ ଆଉ ଶୁଣାଗଲା ନାହିଁ । ଝିଲନ୍ ଘୁଷୁଡ଼ି ଘୁଷୁଡ଼ି ଶବ୍ଦ ଆଡ଼କୁ ଗଲା । ଦେଖିଲା, ରାସ୍ତା ଉପରେ କଅଣ ଗୋଟାଏ ଠିଆ ହୋଇଛି । ସେଇଟା ଘୋଡ଼ାପରି ଦିଶୁଥିଲା ; କିନ୍ତୁ ଠିକ୍ ଘୋଡ଼ା ନୁହେଁ ; କାରଣ ତାହା ଉପରେ ଗୋଟାଏ ଅଦ୍ଭୁତ ଜନ୍ତୁ ଥିଲା । ସେଇଟା ଯେ ମନୁଷ୍ୟ ନୁହେଁ ଏହା ସଫା ଜଣାଯାଉଥିଲା ।

ଝିଲନ୍ ଭାବିଲା, "ଏଇଟା କଅଣ ହୋଇପାରେ ?" ସେ ତୁଣ୍ଡରେ ସିଟି ବଜାଇଲା ଭଳି ଶବ୍ଦ କଲା । ଜନ୍ତୁଟା ବଣ ଭିତରକୁ ଦୌଡ଼ି ପଳାଇଲା ।

କଷ୍ଟିଲନ୍ ଭୟରେ ତଳେ ବସିପଡ଼ିଲା । କିନ୍ତୁ ଝିଲନ୍ ଫେରି ଆସି ହସି ହସି କହିଲା, "ଆରେ, ତୁମେ ଏପରି ଡରୁଛ କାହିଁକି ?

ସେଇଠା ଗୋଟାଏ ହରିଣ । ସେ ପଳାଇଲାବେଳେ ଡାଳ ଭାଙ୍ଗି ପଡ଼ିବା ଶବ୍ଦ ଶୁଣିପାରିଥିବ । ଆମେ ଯେପରି ତାକୁ ଡରୁଛେ, ସେ ମଧ୍ୟ ଆମକୁ ସେହିପରି ଡରୁଛି ।”

ଦୁହେଁ ଯାଇ ପୁଣି ଚାଲିଲେ । ସେତେବେଳକୁ ପାହାନ୍ତିଆ ହୋଇ ଆସିଲଣି । ସେମାନେ ଠିକ୍ ବାଟରେ ଯାଉଛନ୍ତି କି ନା ଏ ବିଷୟରେ ସନ୍ଦେହ ହେଉଥିଲା । ଝିଲନ୍‌ର ମନେ ହେଲା, ତାତାରମାନେ ତାକୁ ଧରି ସେଇବାଟେ ଆଣିଥିଲେ । ସେମାନେ ରୁଷୀୟ ଶିବିରଠାରୁ ଅନ୍ତତଃ ସାତ ମାଇଲ ଦୂରରେ ଅଛନ୍ତି ବୋଲି ଝିଲନ୍‌ର ଅନୁମାନ ହେଲା । କିନ୍ତୁ ରାତିରେ ବାଟ ଭୁଲିବାର ସମ୍ଭାବନା ବେଶୀ । ସେଥିରେ ପୁଣି ଠିକ୍ ବାଟ ଚିହ୍ନିବାର କିଛି ଉପାୟ ନଥିଲା । କିଛି ସମୟ ପରେ ସେମାନେ ଗୋଟିଏ ମେଲା ଜାଗାରେ ପହଞ୍ଚିଲେ । କଷ୍ଟିଲିନ୍ ସେଇଠାରେ ବସିପଡ଼ି କହିଲା, “ତୁମେ ଯାହା କରିବାର କର, ମାତ୍ର ମୁଁ ଆଉ ଚାଲି ପାରିବି ନାହିଁ । ମୋର ଗୋଡ଼ ଆଦୌ ଚଳୁନାହିଁ ।”

ଝିଲନ୍ ତାକୁ ଉଠେଇବା ପାଇଁ ବହୁତ ପ୍ରବର୍ତ୍ତାଇଲା, କିନ୍ତୁ କଷ୍ଟିଲିନ୍‌ର ସେହି ଏକ କଥା—ନା, ମୁଁ କେବେହେଲେ ସେ ପର୍ଯ୍ୟନ୍ତ ଯାଇ ପାରିବି ନାହିଁ ।

ଝିଲନ୍ ବିରକ୍ତ ହୋଇ ତାକୁ ଗାଳିଦେଲା । ଶେଷରେ କହିଲା, “ତାହାହେଲେ ମୁଁ ଏକା ଯାଉଛି । ତୁମେ ଏଇଠି ବସିଥାଅ । ନମସ୍କାର ।”

କଷ୍ଟିଲିନ୍ ଉଠିପଡ଼ି ତା ପଛେ ପଛେ ଚାଲିଲା । ଏହିପରି ସେମାନେ ତିନି ମାଇଲ ଚାଲିଗଲେ । ବଣରେ ଭୟଙ୍କର କୁହୁଡ଼ି ପଡ଼ିଥାଏ । ଆଗକୁ ଦୁଇ ତିନି ହାତ ଦୂର ଦେଖିବା ସମ୍ଭବ ହେଉ ନ

ଥାଏ । ଅକାଶରେ ତାରାଗୁଡ଼ିକ ମଧ୍ୟ ମଳିନ ହୋଇ ଯାଇଥିବାରୁ ଉପରୁ ଆଲୁଅ ଆସୁ ନ ଥାଏ ।

ହଠାତ୍ ସେମାନେ ଘୋଡ଼ା ଟାପୁର ଶବ୍ଦ ଶୁଣି ପାରିଲେ । ଶବ୍ଦଟା ସେମାନଙ୍କ ସାମନା ପଟରୁ ଆସୁଥିଲା । ଘୋଡ଼ାର ନାଲ ପଥରରେ ବାଜି ଶବ୍ଦ ହେଉଥିଲା । ଝିଲିନ୍ ତଳେ ଶୋଇପଡ଼ି, ଭୂଇଁରେ କାନ ଦେଇ ଶୁଣିଲା । ସେ କହିଲା, "ହଁ, ଘୋଡ଼ାଟାପୁର ଶବ୍ଦ । କିଏ ଜଣେ ଘୋଡ଼ାରେ ବସି ଆମର ଆଡ଼କୁ ଆସୁଛି ।"

ଦୁହେଁ ଯାକ ରାସ୍ତାରୁ ପଳାଇ ଯାଇ ବଣ ଭିତରେ ଲୁଚି-ଗଲେ । କିଛି ସମୟ ଲୁଚି ରହିବା ପରେ ଝିଲିନ୍ ରାସ୍ତାପାଖକୁ ଆସି ଚାହିଁଲା । ସେ ଦେଖିଲା, ଜଣେ ତାତାର ଘୋଡ଼ାରେ ବସି ଯାଉଛି । ଲୋକଟା ଗୋଟାଏ ଗାଈକୁ ତଡ଼ି ତଡ଼ି ନେଉଛି ଓ ଗୁଣୁଗୁଣୁ ହୋଇ ଗୀତ ଗାଉଛି । ସେ ଏ ଦୁହିଁଙ୍କ ପାର ହୋଇ କିଛି ଦୂର ଚାଲି ଯାଇଥିଲା । ଝିଲିନ୍ କଷ୍ଟିଲିନ୍ ପାଖକୁ ଫେରିଆସି କହିଲା, "ଈଶ୍ୱର ଖୁବ୍ ଦୟା କରିଛନ୍ତି । ଲୋକଟା ଆମ ପାଖ ଦେଇ ରାସ୍ତାରେ ଚାଲିଯାଇଛି । ଏବେ ଉଠ, ବାଟେ ବାଟେ ଚାଲିଯିବା ।"

କଷ୍ଟିଲିନ ଉଠିବାକୁ ଚେଷ୍ଟା କଲା, କିନ୍ତୁ ଉଠି ନ ପାରି ପୁଣି ବସି ପଡ଼ିଲା । ତାର ଗୋଡ଼ରୁ ରକ୍ତ ବୋହିଯାଉଥାଏ । ସେ କହିଲା, "ଭାଇ, ସତ କହୁଛି, ମୁଁ ଚାଲିପାରୁନାହିଁ । ମୋର ଯିବାକୁ ଆଦୌ ବଳ ନାହିଁ ।"

ଝିଲିନ ତାକୁ ଟେକିବାକୁ ଚେଷ୍ଟାକଲା । କଷ୍ଟିଲିନ୍ ଚିତ୍କାର କରିଉଠିଲା, "ଓଃ ମରିଗଲି; ମୋତେ ଭାରି କାଟୁଛି ।"

ଝିଲିନର ସବୁ ସାହସ ଉଭେଇଗଲା । ସେ କହିଲା, "ତୁମେ ଏତେ ପାଟି କରୁଛ କାହିଁକି ? ସେ ତାତାରଟା ଏଇ ପାଖରେ

ଅଛୁ । ସେ ତୁମର ପାଟି ଶୁଣି ପାରିଥିବ ।" ସେ ମନେ ମନେ କହିଲା, 'ଓଃ, ଏପରି ଲୋକଙ୍କୁ ନେଇ କଅଣ କରିବି ? ସେ ଆଉ ଚାଲି ପାରିବ ନାହିଁ । ପୁଣି ଜଣେ ବନ୍ଧୁକୁ ବିପଦ ମୁହଁରେ ଛାଡ଼ି-ଦେଇ ମୁଁ ଯାଇ ପାରୁ ନାହିଁ ।"

ସେ କଷ୍ଟିଲନ୍‌କୁ କହିଲା, "ଅଚ୍ଛା, ଗୋଟିଏ କାମ କର । ତୁମେ ଯେବେ ଚାଲି ପାରୁନାହଁ ମୋ ପିଠିରେ ଲଦି ହୋଇ ପଡ଼ । ମୁଁ ତୁମକୁ ନେଇଯିବି ।"

ହ୍ଵିଲନ କଷ୍ଟିଲନ୍‌ର ଦୁଇ ଗୋଡ଼ ମଝିରେ ହାତ ଦେଇ ତାକୁ ଲଦି କଲା ଓ ତାକୁ ପିଠିରେ ପକାଇ ଚାଲିବାକୁ ଲାଗିଲା ।

କଷ୍ଟିଲନର ଭାର ସହିବା ତା ପକ୍ଷରେ କଷ୍ଟକର ହେଉଥାଏ । ପାଦର ରକ୍ତ ତା ଦେହରେ ଲାଗି ଯାଉଥାଏ । ମଝିରେ ମଝିରେ କଷ୍ଟିଲନ ତଳକୁ ଖସି ପଡ଼ିଲେ ତାକୁ ଉପରକୁ ଠେକିବାକୁ ପଡ଼ୁଥାଏ । ହ୍ଵିଲନ୍ ଖୁବ୍ ହାଲିଆ ହୋଇଗଲା ।

କଷ୍ଟିଲନ ଯେଉଁ ଚିତ୍କାର କରିଥିଲା, ତାହା ନିଶ୍ଚୟ ତାତାରର କାନରେ ପଡ଼ିଥିବ । କାରଣ ହ୍ଵିଲନ ହଠାତ୍ ତା ପଛଆଡ଼ୁ ଘୋଡ଼ା ଟାପୁର ଶବ୍ଦ ଶୁଣିପାରିଲା ଓ ତା ସଙ୍ଗେ ସଙ୍ଗେ କେହି ଜଣେ ତାତାର ଭାଷାରେ ବଡ଼ ପାଟିରେ ଡାକିବାର ଶୁଣା-ଗଲା । ସେ ବଣ ଭିତରକୁ ଦଉଡ଼ି ପଳାଇଲା । ତାତାର ବନ୍ଧୁକ ବାହାର କରି ବଣ ଭିତରକୁ ଗୁଳି ମାରିଲା, ମାତ୍ର ଗୁଳି ଦୁହିଙ୍କ ଭିତରୁ କାହାରି ଦେହରେ ବାଜିଲା ନାହିଁ । ଲୋକଟା ତା ନିଜ ଭାଷାରେ ପାଟି କରି କରି ରାସ୍ତାରେ ଚାଲିଗଲା ।

ହ୍ଵିଲନ କହିଲା, "ଏବେ ଆମର କଥା ସରିଲା । ଏ ଲୋକଟା ଯାଇ ସବୁ ତାତାରଙ୍କୁ ଏକଜୁଟ କରିବ । ସମସ୍ତେ ମିଳି ଆମକୁ

ଖୋଜ ବାହାର କରିବେ । ଏଠାରୁ ଅନ୍ତତଃ ଦୁଇ ମାଇଲ ପଳାଇ ଯାଇ ନ ପାରିଲେ ଆମର ପ୍ରାଣ ରହିବ ନାହିଁ ।”

ସେ ମନକୁ ମନ କହିଲା, “ମୁଁ କାହିଁକି ଏ ବୋଝଟିକୁ ମୁଣ୍ଡେଇଲି ? ଏକୁଟିଆ ଆସିଥିଲେ ମୁଁ ଏତେବେଳକୁ ଆମ ଶିବିରରେ ପହଞ୍ଚି ସାରିଥାନ୍ତି ।”

କଷ୍ଟିଲିନ୍ କହିଲା, “ତୁମେ ମୋତେ ଛାଡ଼ି ଦେଇ ଏକୁଟିଆ ଚାଲିଯାଅ । ମୋ ସକାଶେ ତୁମେ ମରିବ କାହିଁକି ?”

ଝିଲିନ ଉତ୍ତର କଲା, “ନା, ମୁଁ ତୁମକୁ ଛାଡ଼ି ଏକୁଟିଆ ଯାଇ ପାରିବି ନାହିଁ । ଜଣେ ବନ୍ଧୁକୁ ବିପଦ ମଧ୍ୟରେ ଛାଡ଼ି ଦେଇ ଚାଲିଯିବା ଘୋର ଅନ୍ୟାୟ ।”

ଝିଲିନ ପୁଣି କଷ୍ଟିଲିନକୁ କାନ୍ଧରେ ବସାଇ ଧୀରେ ଧୀରେ ଚାଲିଲା । ଏହାପରେ ସେମାନେ ପ୍ରାୟ ଅଧ ମାଇଲ ବାଟ ଗଲେ । ତଥାପି ସେମାନେ ସେହି ଜଙ୍ଗଲ ଭିତରେ ଥିଲେ । କେଉଁଠାରେ ଯେ ଜଙ୍ଗଲ ଶେଷ ହେବ ତାହା ମଧ୍ୟ ଜାଣି ପାରୁ ନ ଥିଲେ । ଯାହା ହେଉ ସେତେବେଳେ କୁହୁଡ଼ି ଛାଡ଼ି ଯାଇଥିଲା । ଆକାଶରେ ଗୋଟିଏ ସୁଦ୍ଧା ତାରା ନ ଥିଲା । ଏଣେ ଆକାଶରେ ମେଘ ଘୋଟି ଆସୁଥାଏ । ଝିଲିନ ବଡ଼ କ୍ଳାନ୍ତ ଅବସ୍ଥାରେ ପଡ଼ିଗଲା । ସେମାନେ ବାଟ ପାଖରେ ଗୋଟିଏ ନଈ ଦେଖି ସେଠାକୁ ଗଲେ । ଝିଲିନ ତାର ସାଥିକୁ ତଳେ ବସାଇ ଦେଲା ।

ସେ କହିଲା, “ମୁଁ ଟିକିଏ ବିଶ୍ରାମ ନେଇ ପାଣି ପିଏ । ଏଠାରେ ଦୁହେଁ ଯାକ କିଛି ଖାଇବା । ଶିବିର ଏଠାରୁ ବେଶୀ ଦୂର ହେବ ନାହିଁ ।”

ସେ ପାଣି ପିଇବାକୁ ନଈକୁ ଯାଇଛନ୍ତି, ଏହି ସମୟରେ ତାର ପଛଆଡ଼ୁ ଘୋଡ଼ା ଟାପୁର ଶବ୍ଦ ଶୁଣାଗଲା । ଦୁହେଁଯାକ ପୁଣି ବଣ ଭିତରକୁ ପଶିଯାଇ ଭୂଇଁରେ ଶୋଇପଡ଼ିଲେ ।

ସେମାନେ ଡାକାଇତମାନଙ୍କ ପାଟି ଶୁଣି ପାରିଲେ । ଯେଉଁଠାରୁ ସେମାନେ ବାଟ ଭାଙ୍ଗି ବଣ ଭିତରକୁ ଆସିଥିଲେ ସେହିଠାରେ ଡାକାଇତମାନେ ଠୁଳ ହୋଇଗଲେ । ସେମାନେ କିଛି ସମୟ କଥାବାର୍ତ୍ତା ହୋଇ ଗୋଟାଏ କୁକୁରକୁ ଛାଡ଼ି ଦେଲେ । କୁକୁରଟା ଗନ୍ଧ ବାରି ବାରି ବଣ ଭିତରକୁ ପଶିଲା ଓ ସେମାନଙ୍କ ପାଖରେ ପହଞ୍ଚି ଯାଇ ଭୁକିବାକୁ ଲାଗିଲା ।

ଡାକାଇତମାନେ ଦଉଡ଼ିଆସି ଦୁହିଁଙ୍କୁ ବାନ୍ଧି ପକାଇଲେ । ଏମାନଙ୍କୁ ଝିଲନ ବା କଷ୍ଟିଲନ ଆଗରୁ ଦେଖିନଥିଲେ । ଏମାନେ ଦୁହିଁଙ୍କୁ ଘୋଡ଼ା ପିଠିରେ ଥୋଇ ଚାଲିଲେ ।

ପ୍ରାୟ ଦୁଇମାଇଲ ଯିବା ପରେ ବନ୍ଦୀ ଦୁହେଁ ସେମାନଙ୍କର ମୁଖିଆକୁ ଦେଖିବାକୁ ପାଇଲେ । ତା ସାଥିରେ ଆଉ ଦୁଇଜଣ ଡାକୁ ଥିଲେ । ଯେଉଁ ଡାକାଇତମାନେ ସେମାନଙ୍କୁ ବନ୍ଦୀ କରି ନେଇଥିଲେ, ସେମାନଙ୍କ ସହିତ କିଛି କଥାବାର୍ତ୍ତା ହେବା ପରେ ମୁଖିଆ ଝିଲନ ଓ କଷ୍ଟିଲନକୁ ନିଜର ଗୋଟିଏ ଘୋଡ଼ା ଉପରେ ବସି ଗାଆଁକୁ ଚାଲିଲା ।

ବାଟରେ ସେହି ଡାକୁ ମୁଖିଆଟି ଥରେ ସୁଦ୍ଧା ହସି ନଥିଲା କି ପଦେହେଲେ କଥା କହି ନ ଥିଲା ।

ଗାଆଁରେ ପହଞ୍ଚିଲାବେଳକୁ ଦିନ ହୋଇଯାଇଥିଲା । ବନ୍ଦୀ ଦୁହିଁଙ୍କୁ ଗାଆଁ ଦାଣ୍ଡରେ ରଖିଦିଆଗଲା । ପିଲାମାନେ ଆସି ଦୁହିଁଙ୍କୁ ବେଢ଼ିଗଲେ । ସେମାନଙ୍କ ଭିତରୁ କେତେକ ବନ୍ଦୀ ଦୁହିଁଙ୍କ

ଉପରକୁ ଟେକା ଫିଙ୍ଗିଲେ, ଆଉ କେତେକ ଘୋଡ଼ା ଗୃରୁକ ଧର ପିଟିବାରେ ଲଗିଲେ ।

ମୁନାବ ଝିଲନ ପାଖକୁ ଯାଇ କହିଲ, "ଆଉ ପନ୍ଦରଦନ ଭିତରେ ତୋର ଟଙ୍କା ନ ଅସିଲେ ତୋତେ ମାରି ଦଆଯିବ । ପୁଣି ଯେବେ ପଳାଇବାର ଚେଷ୍ଟା କରୁ, ତୋତେ କୁକୁର ଭଳି ପିଟି ପିଟି ମାରଦେବୁ । ଟଙ୍କା ପାଇଁ ଘରକୁ ଚିଠି ଲେଖେ ।"

କାଗଜ, କାଳି, କଲମ ଅସିଲ । ଦୁହେଁଯାକ ଟଙ୍କା ପଠାଇବାକୁ ଚିଠି ଲେଖିଲେ । ଦୁହିଁଙ୍କ ଗୋଡ଼ରେ ପୁଣି ଗୋଡ଼କଡ଼ା ଲଗାଇ ଦଆଗଲ ଓ ବାରଫୁଟ ଲମ୍ବ ଓସାରର ଗୋଟାଏ ଗାତ ଭିତରକୁ ଦୁହିଁଙ୍କୁ ପକାଇଦଆଗଲ ।

ଏବେ ସେମାନଙ୍କୁ ବନ୍ଦୀ ଜୀବନର ଘୋର କଷ୍ଟ ଭୋଗିବାକୁ ପଡ଼ିଲ । ଦନ ରାତ କେତେବେଳେ ହେଲେ ପାଦରୁ ଗୋଡ଼କଡ଼ା ଫିଟା ଗଲ ନାହିଁ, କି ବାହାରର ପବନ ସେମାନଙ୍କ ଦେହରେ ବାଜିଲ ନାହିଁ । କୁକୁର ବଲେଇଙ୍କୁ ଦେଲାପରି ସେମାନଙ୍କ ପାଇଁ କଞ୍ଚା ଦରସିଝା ରୁଟି ବା ମାଂସ ଗାତ ଭିତରକୁ ଫିଙ୍ଗି ଦଆଯାଉଥିଲ ଓ ଗୋଟାଏ ବୋତଲରେ କିଛି ପାଣି ଦଉଡ଼ି ସାହାଯ୍ୟରେ ପକାଇ ଦଆଯାଉଥିଲ ।

ଗାତ ଭିତରଟା ଗରମ ଓ ସନ୍ତସନ୍ତିଆ; ଗୋଟାଏ ଭୀଷଣ ଦୁର୍ଗନ୍ଧ ବାହାରୁଥାଏ । କଷ୍ଟିଲିନର ରୋଗ ବଢ଼ି ତାର ଦେହଯାକ ଫୁଲିଗଲ । ଯନ୍ତ୍ରଣାରେ ସେ ସବୁବେଳେ ଛଟପଟ ହେଉଥାଏ; ବେଳେବେଳେ ଶୋଇପଡ଼େ । ଝିଲନ ପଳାଇ ଯିବାର ଆଉ କୌଣସି ଉପାୟ ନ ଦେଖି ହତାଶ ହୋଇ ପଡ଼ିଲ । ତଥାପି ସେ ଚେଷ୍ଟା କରିବାକୁ ସ୍ଥିର କଲ । ଭୂଇଁ ତଳେ ସେ ଗୋଟାଏ ସୁଡ଼ଙ୍ଗ ଖୋଳିବାକୁ ଆରମ୍ଭ କଲ, କିନ୍ତୁ ଖୋଳା ମାଟିକୁ କେଉଁଠାରେ

ରଖିବ ? ତାର ମୁନିବ ଜାଣିପାରିଲ ଯେ ସେ ସୁଡ଼ଙ୍ଗ ଖୋଳିବାକୁ ପୁଣି ଚେଷ୍ଟା କରୁଛି । ତେଣୁ ସେ ଝିଲନକୁ ପ୍ରାଣରେ ମାରିଦେବ ବୋଲି ଧମକ ଦେଲା ।

ଏବେ ଝିଲନ ଗମ୍ଭୀର ମନ ଦୁଃଖରେ ଗାତ ଭିତରେ ବସି ନିଜ ବନ୍ଦୀ ଜୀବନ ବିଷୟ ଚିନ୍ତା କରୁଛି । ଏଇ ସମୟରେ ତା ପାଖରେ ଉପରୁ ଗୋଟିଏ ପିଠା ପଡ଼ିଲା; ଟିକିଏ ପରେ ସେଥିପର ଆଉ ଗୋଟିଏ ପିଠା ପଡ଼ିଲା । ପିଠା ପରେ ପଡ଼ିଲା କିଛି ଫଳ । ସେ ଉପରକୁ ଚାହିଁ ଦେଖିଲା, ଦୀନା ତାପାଇଁ ଏଗୁଡ଼ିକ ପକାଉଛି । ସେ ଗାତ ଭିତରକୁ ଥରେ ଚାହିଁ ଝିଲନକୁ ଦେଖିଲା, ତାହା ପରେ ହସି ହସି ପଳାଇଗଲା । ଝିଲନ ଭାବିଲା, "ଦୀନାର ମୋ ପ୍ରତି ଏତେ ଦୟା । ସେ କଅଣ ମୋର ଏଠାରୁ ପଳାଇବାରେ ସାହାଯ୍ୟ କରିବ ନାହିଁ ?"

ଗାତ ଭିତରର ଗୋଟାଏ କଣରୁ କିଛି ମାଟି ସଂଗ୍ରହ କରି ସେଥିରେ ସେ କେତୋଟି କଣ୍ଢେଇ ତିଆରି କଲା । ସେଥିରେ ମଣିଷ, ଘୋଡ଼ା, କୁକୁର ପ୍ରଭୃତି ଥିଲା । ସେ ଭାବିଲା, ଦୀନା ଏଠାକୁ ଆସିଲେ ମୁଁ ଏଗୁଡ଼ିକ ଉପରକୁ ଫିଙ୍ଗିଦେବି ।"

କିନ୍ତୁ ଏହାର ପରଦିନ ଦୀନା ଆସିଲା ନାହିଁ । ଗାତ ପାଖ ଦେଇ କେତେ ଜଣ ଘୋଡ଼ାରେ ଯିବାର ସେ ଝିଲନ ଶୁଣି ପାରିଲା । ଗାତଠାରୁ ଅଳ୍ପ ଦୂରରେ ତାତାରମାନେ ଗୋଟାଏ ସଭା କରୁଥିଲେ । ସଭାରେ ବହୁତ ଯୁକ୍ତିତର୍କ ଚାଲିଲା । ଝିଲନ ସେଥିରୁ କିଛି କିଛି ଶୁଣି ପାରୁଥିଲା । କଥାବାର୍ତ୍ତା ଭିତରେ "ରୁଷୀୟ" ଶବ୍ଦଟା ଅନେକ ଥର ଶୁଣାଯାଉଥିଲା । ଏଥିରୁ ଝିଲନ ଅନୁମାନ କଲା ଯେ ନିକଟରେ କେଉଁଠାରେ ରୁଷୀୟ ସୈନ୍ୟମାନେ ଅଛନ୍ତି ଓ ସେମାନେ ତାତାର ଗ୍ରାମମାନଙ୍କୁ ଆକ୍ରମଣ କରିବାର

ଅଶଙ୍କା ଅଛି । ତେଣୁ ବନ୍ଦୀମାନଙ୍କୁ ଜଗିବା ହେବ, ଯେ ବିଷୟରେ ତାତାରମାନଙ୍କ ଭିତରେ ବିଗ୍ଭର ପଡ଼ିଛି ।

କିଛି ବେଳ ଯାଏ ପାଟିତୁଣ୍ଡ, ଗୋଳମାଳ ଚାଲିଲା । ତାହା ପରେ ସଭା ଭାଙ୍ଗିଲା ଓ ତାତାରମାନେ କୁଆଡ଼େ ଚାଲିଗଲେ । ଝିଲିନ ଉପରକୁ ଚାହିଁ ଦେଖିଲା, ଦୀନା ଗାତର ଧାରରେ ବସି ତଳକୁ ଅନାଇଛି । ତାର ଆଖି ଯୋଡ଼ିକ ଆକାଶର ତାରା ପରି ଉଜ୍ଜ୍ୱଳ ଦିଶୁଛି । ସେ ଜାମା ଭିତରୁ କିଛି ଖାଇବା ଜିନିଷ ବାହାର କରି ଗାତ ଭିତରକୁ ଫିଙ୍ଗିଦେଲା । ଝିଲିନ ସେଗୁଡ଼ିକ ଧରି ପକାଇ କହିଲା, "ଦୀନା, ତୁ ଆଗରୁ ଆସିଲୁ ନାହିଁ କାହିଁକି ? ମୁଁ ତୋ ପାଇଁ କେତୋଟି କଣ୍ଢେଇ ତିଆରି କରି ରଖିଛି । ଏଇ ନେ ।" ଏହା କହି ସେ କଣ୍ଢେଇ ଗୁଡ଼ିକ ଗୋଟିକ ପରେ ଗୋଟିଏ ଉପରକୁ ଫିଙ୍ଗି ଦେଲା ।

ଝିଲିନ ଆଶା କରିଥିଲା, ଦୀନା ଆନନ୍ଦରେ କଣ୍ଢେଇ ଗୁଡ଼ିକ ନେବ । କିନ୍ତୁ ସେ ସେଗୁଡ଼ିକ ଆଡ଼କୁ ନ ଚାହିଁ ମୁଣ୍ଡ ହଲେଇ କହିଲା, "ମୋର କଣ୍ଢେଇ ଦରକାର ନାହିଁ । ତୋତେ ମାରି ଦେବେ ବୋଲି ଥୟ କରିଛନ୍ତି । ଏମିତି ମାରିବେ ।" ଏହା କହି ସେ ନିଜ ଗଳା ପାଖରେ ହାତକୁ ଦେଖାଇଲା ।

ଝିଲିନ ପଚାରିଲା, "ମୋତେ ମାରିବାକୁ କିଏ କହୁଛି ?"

ଦୀନା ଉତ୍ତର କଲା, "ବାପା କହୁଥିଲେ । ଗାଆଁର ସବୁ ବୁଢ଼ାମାନଙ୍କର ଇଚ୍ଛା, ତୋତେ ମାରି ଦେବାକୁ ହେବ । ଏ କଥା ଶୁଣି ମୋ ମନ ବଡ଼ ଖରାପ ହେଉଛି ।"

ଝିଲିନ କହିଲା, "ମୋ ପାଇଁ ଯେବେ ତୋ ମନରେ ଦୁଃଖ ହେଉଛି, ତେବେ ମୋତେ ଖଣ୍ଡିଏ ଲମ୍ବା ବାଉଁଶ ଦେଇ ପାରିବୁ କି ?"

ସେ ମୁଣ୍ଡ ହଲାଇ ଜଣାଇ ଦେଲା—ମୁଁ ପାରିବି ନାହିଁ ।

ହିଲନ ଖୁବ୍ ଅନୁନୟ କରି କହିଲା, "ମୋ ପାଇଁ ଏତକ କଲେ ମୋର ବଡ଼ ଉପକାର ହେବ । ଏଇ ସାମାନ୍ୟ କାମ କରି ମୋର ଜୀବନ ରଖ । ଖାଲି ମନ ଦୁଃଖ କଲେ ଲାଭ କଅଣ ?"

ମୀନା କାନ୍ଦ କାନ୍ଦ ହୋଇ କହିଲା, "ଘରେ ସମସ୍ତେ ଅଛନ୍ତି । ବାଉଁଶଟା ଆଣି ଆସିଲେ ସଭିଙ୍କର ନଜର ପଡ଼ିବ । ମୁଁ ତା କରି ପାରିବି ନାହିଁ ।" ଏହା କହି ସେ ଚାଲିଗଲା ।

ସନ୍ଧ୍ୟା ହେଲା । ହିଲନ ବାରମ୍ବାର ଉପରକୁ ଚାହିଁ ଦେଖୁଥାଏ । ତାର ଚିନ୍ତା—ଆଜି ତାର ଭାଗ୍ୟରେ କଅଣ ଅଛି ? ଆକାଶରେ ଚନ୍ଦ୍ର ଉଇଁ ନ ଥାନ୍ତି, କିନ୍ତୁ ତାରାମାନେ ଝିକ୍ ଝିକ୍ କରୁଥାନ୍ତି । ଗାତ ଭିତରୁ ହିଲନ ତାରାମାନଙ୍କୁ ଦେଖି ପାରୁଥାଏ । ସେ ଭାବିଲା—ମାହାଦେଇ ପିଲାଟାଏ ତ । ଏଭଳି କାମ କରିବାକୁ ତାର ଭୟ ହେବା ବିଚିତ୍ର ନୁହେଁ ।

ହଠାତ୍ ତା ଉପରେ କିଛି ମାଟି ଖସି ପଡ଼ିଲା । ସେ ଉପରକୁ ଚାହିଁ ଦେଖିଲା, ମୁଣ୍ଡ ଉପରେ ଗୋଟାଏ ଲମ୍ବ ବାଉଁଶର ଅଗ ଦିଶୁଛି । ବାଉଁଶଟି କଣ ବାଟରେ ଗାତ ଭିତରକୁ ଆସିଲା । ଏତେ ବିପଦରେ ମଧ୍ୟ ହିଲନର ମନରେ ଆନନ୍ଦ ହେଲା । ସେ ବାଉଁଶଟିକୁ ଧରିନେଲା । ବାଉଁଶଟି ବେଶ୍ ମଜବୁତ । ଏଇଟିକୁ ସେ ଦିନେ ତା ମୁନିବର ଘର ଚାଳ ଉପରେ ଦେଖିଥିଲା ।

ଉପରକୁ ଚାହିଁ ହିଲନ ମୀନାର ଆଖି ଦୁଇଟିକୁ ଦେଖିଲା । ଅନ୍ଧାରରେ ବିଲେଇର ଆଖି ପରି ତାହା ଉଜ୍ଜ୍ୱଳ । ମୀନା ଡାକିଲା—"ଆଇଭାନ୍ ! ଆଇଭାନ୍ !" ହିଲନ୍ କହିଲା, "ଖବର କଅଣ ?"

ମୀନା ଉତ୍ତର କଲା, "ଦୁଇ ଜଣଙ୍କୁ ଛାଡ଼ ଗାଆଁର ଆଉ ସମସ୍ତେ ଚାଲିଗଲେଣି ।"

ଝିଲନ କଷ୍ଟିଲନକୁ କହିଲା, "ଏବେ ଆସ । ଥରେ ଶେଷ ଚେଷ୍ଟା କରି ଦେଖିବା । ମୁଁ ଉପରକୁ ଉଠିବାରେ ତୁମକୁ ସାହାଯ୍ୟ କରିବି ।"

କିନ୍ତୁ କଷ୍ଟିଲନ ଏଥିରେ ରାଜି ନ ହୋଇ କହିଲା, "ନା, ମୁଁ ଯିବି ନାହିଁ । ମୁଁ ଯେ ଏଠାରୁ ଯାଇ ପାରିବି ନାହିଁ, ଏଥିରେ କଅଣ ସନ୍ଦେହ ଅଛି ? ମୋର ହାତ ଗୋଡ଼ ଚଳୁ ନାହିଁ । ହଲଚଲ ହେବାକୁ ଦେହରେ ବଳ ନାହିଁ । ଯିବି କିପରି ?"

"ତେବେ ଭାଇ, ମୋତେ ବିଦାୟ ଦିଅ; ମୁଁ ଯାଏ । ମୋତେ ଖରାପ ବୋଲି ଭାବିବ ନାହିଁ ।" ଏତିକି କହି ଝିଲନ ବାଉଁଶକୁ ଧରି ଗାତ ଉପରକୁ ଉଠିଲା । ଦୀନା ଗାତ ଉପରେ ବାଉଁଶର ମୁଣ୍ଡଟି ଧରିଥାଏ । ଉପରକୁ ଉଠିଲା ବେଳକୁ ଝିଲନ ଦୁଇ ତିନିଥର ଖସିପଡ଼ିଲା । ପାଦରେ ଗୋଡ଼କଡ଼ା ଲାଗିଥିବାରୁ ବାଉଁଶରେ ପାଦ ଠିକ୍ ରହୁନଥିଲା । ଯାହାହେଉ, ସେ କୌଣସିମତେ ଉପରକୁ ଆସିଲା । ଦୀନା ତାର ଛୋଟ ହାତ ଦୁଇଟିରେ ଝିଲନର ଜାମାକୁ ଧରି ଟାଣିବାଦ୍ୱାରା ତାକୁ ଉଠିବାରେ ଖୁବ୍ ସାହାଯ୍ୟ କରିଥିଲା ।

ଉପରକୁ ଉଠିବା ପରେ ଝିଲନ ବାଉଁଶଟିକୁ ଟେକିଆଣି ଦୀନାକୁ କହିଲା, "ଏହାକୁ ନେଇ ଯେଉଁଠାରେ ଥିଲା ସେହିଠାରେ ରଖିଦେବୁ । ନହେଲେ କଥାଟା ଜଣା ପଡ଼ିଯିବ; ତୁ ମାଡ଼ ଖାଇବୁ ।"

ଦୀନା ବାଉଁଶଟିକୁ ଟାଣି ଟାଣି ନେଇଗଲା । ଝିଲନ ପାହାଡ଼ ଆଡ଼େ ଗଲା । ଡୋଣିଆ ବାଟରେ କିଛି ଦୂର ଯାଇ ସେ ଗୋଡ଼କଡ଼ାଟା ଭାଙ୍ଗିବାକୁ ଚେଷ୍ଟା କଲା । ଖଣ୍ଡେ ପଥର ଗୋଟାଇ ଆଣି ସେ ତାକୁ ଜୋର୍‌ରେ ଛେଚିଲା । କିନ୍ତୁ ଶିକୁଳିଟା ଖୁବ୍ ମଜବୁତ ଥିବାରୁ ଯେତେ ଛେଚିଲେ ସୁଦ୍ଧା ଭାଙ୍ଗିଲା ନାହିଁ । ଦୀନା ଆସି

ଖଣ୍ଡେ ପଥରରେ ଛେଳ ଭାଙ୍ଗିବାକୁ ଚେଷ୍ଟା କଲା । ତାର ବା ବଳ କେତେ ? ସେ ଭାଙ୍ଗି ପାରନ୍ତା ?

ଫେଲନ ଚାରଆଡ଼କୁ ଚାହିଁଲା । ବାଁପାଖେ ପାହାଡ଼ ପଛରେ ଗୋଟାଏ ନାଲି ଆଲୁଅ ଦେଖାଗଲା । ସେ ଭାବିଲା—ଚନ୍ଦ୍ର ଉଇଁବା ଆଗରୁ ମୁଁ ଏ ସମତଳ ଉପତ୍ୟକା ପାର ହୋଇ ଜଙ୍ଗଲରେ ପହଞ୍ଚି-ଯାଇ ପାରିବ । ପଥର ଖଣ୍ଡକ ଫିଙ୍ଗିଦେଇ ସେ ଚାଲିବାକୁ ବାହାରିଲା । ଗୋଡ଼ରେ ଗୋଡ଼କଡ଼ା ଥାଉ ବା ନ ଥାଉ ତାକୁ ଯିବାକୁହିଁ ହେବ । ସେ ଦୀନାକୁ କହିଲା, "ଦୀନା, ମୋତେ ବିଦାୟ ଦେ । ତୁ ମୋର ଯେଉଁ ଉପକାର କରିଛୁ ମୋ ଜୀବନରେ କେବେ ଭୁଲି ପାରିବି ନାହିଁ ।" ଦୀନା ତାକୁ ଧରିପକାଇ ତା ହାତରେ କିଛି ଖାଇବା ଜିନଷ ଦେଲା ।

ଫେଲନ କହିଲା, "ତୋତେ ଅଶେଷ ଧନ୍ୟବାଦ । ମୁଁ ଯାଉଛି; ଏବେ କିଏ ତୋ ପାଇଁ କଣ୍ଢେଇ ତିଆରି କରିଦେବ ?" ଏହା କହି ସେ ଦୀନାର ମୁଣ୍ଡରେ ହାତ ବୁଲାଇଲା ।

ଦୀନାର ଆଖିରୁ ଲୁହ ବହିଗଲା । ସେ ହାତରେ ମୁହଁକୁ ଲୁଚାଇ ଡେଇଁ ଡେଇଁ ଚାଲିଗଲା ।

କାଳେ ଚାଲିଲାବେଳେ ଶବ୍ଦ ହେବ ବୋଲି ଫେଲନ ଗୋଡ଼କଡ଼ାର ତାଲାଟାକୁ ହାତରେ ଧରି ରାସ୍ତାରେ ଚାଲିଲା । ଯିବାକୁ ବଡ଼ କଷ୍ଟ ଲାଗୁଥାଏ । ଯେଉଁଆଡ଼େ ଚନ୍ଦ୍ର ଉଇଁବାର କଥା, ସେଆଡ଼କୁ ସେ ବାରମ୍ବାର ଚାହୁଁଥାଏ । ବାଟଟା ତାର ପରିଚିତ । ସିଧା ଚାଲିଗଲେ ତାକୁ ଛଅମାଇଲ ଯିବାକୁ ହେବ । ଜହ୍ନ ଉଇଁବା ଆଗରୁ ବଣପାଖରେ ପହଞ୍ଚିଗଲେ ତାର ଆଉ ଭୟ ରହିବ ନାହିଁ । ସେ ନଈ ପାର ହୋଇଗଲା । ପାହାଡ଼ ପଛପଟରେ ଅଲୁଅ ଅଧିକ ଉଜ୍ଜ୍ୱଳ ହୋଇ ଆସୁଥିଲା । ସେଇ ଆଲୁଅକୁ ଚାହିଁ

ସେ ଉପତ୍ୟକାର ସମତଳ ରାସ୍ତାରେ ଚାଲିଲା । ଏତେବେଳଯାଏ ଚନ୍ଦ୍ର ଦେଖାଯାଉନଥାନ୍ତି । ଆଲୁଅ ଖୁବ୍ ଉଜ୍ଜ୍ୱଳ ଦିଶିଲା । ଉପତ୍ୟକାର ଗୋଟାଏ ପାଖ ଅନ୍ଧକାର ହୋଇଆସୁଥାଏ । ପାହାଡ଼ର ଛାୟା ପାଦଦେଶକୁ ଢଳିଆସି ତା ପାଖକୁ ଲାଗି-ଯାଉଥାଏ ।

ଏଇ ଛାୟାରେ ଝିଲିନ ଅଟେଇ ଚାଲିଲା । ସେ ଯଥାଶକ୍ତି ବେଗରେ ଚାଲିଥାଏ । ତେଣେ ଆକାଶରେ ଚନ୍ଦ୍ର ମଧ୍ୟ ଉପରକୁ ଉଠିଲେ । ଡାହାଣପାଖ ପାହାଡ଼ର ଶିଖର ଚନ୍ଦ୍ରକିରଣରେ ଧଳା ହୋଇଗଲା । ସେ ଜଙ୍ଗଲ ପାଖରେ ପହଞ୍ଚିଲା ବେଳକୁ ଚନ୍ଦ୍ର ପାହାଡ଼ ପଛପଟରୁ ଦେଖାଦେଲେ । ଦିନପରି ସଫା ଆଲୁଅ ପଡ଼ିଲା; ସେଥିରେ ଗଛର ପତ୍ର ମଧ୍ୟ ଗଣିହେବ । ପାହାଡ଼ର ଉପରଯାକ ଆଲୁଅ ବାଖ୍ଟି ହୋଇ ପଡ଼ିଥିଲା । କିନ୍ତୁ ନଦୀର କୁଳୁକୁଳୁ ଧ୍ୱନି ଛଡ଼ା ଅନ୍ୟ କୌଣସି ଶବ୍ଦ ଶୁଣାଯାଉ ନଥିଲା ।

ଝିଲିନ ବାଟରେ କାହାରିକୁ ନ ଭେଟି ବଣ ପାଖରେ ପହଞ୍ଚିଗଲା । ବିଶ୍ରାମ ନେବାପାଇଁ ସେ ଗୋଟିଏ ଅନ୍ଧାରୁଆ ଜାଗା ଖୋଜି ବସିପଡ଼ିଲା । ଟିକିଏ ବିଶ୍ରାମ କରି ସେ କିଛି ଖାଇଲା । ଖଣ୍ଡେ ପଥର ଗୋଟାଇ ସେ ପୁଣି ଥରେ ଗୋଡ଼ କଡ଼ାକୁ ଭାଙ୍ଗିବାକୁ ଚେଷ୍ଟା କଲା । ପିଟି ପିଟି ତା ହାତରେ ଫୋଟକା ହୋଇଗଲା, ତଥାପି ତାଲା ଭାଙ୍ଗିଲା ନାହିଁ । ତେଣୁ ସେ ଆଉ ବିଶ୍ରାମ ନ ନେଇ ପୁଣି ଚାଲିଲା । ଅଧମାଇଲରୁ କିଛି ବେଶି ଗଲାବେଳକୁ ସେ ହାଲିଆ ହୋଇପଡ଼ିଲା । ଗୋଡ଼ରେ ବେଦନା ହେଉଥାଏ । ଆଠ ଦଶ ପାହୁଣ୍ଡ ଚାଲିଲା ପରେ ତାକୁ ବିଶ୍ରାମ ନେବାକୁ ହେଉଥାଏ ।

ସେ ଭାବିଲା, "ଦେହରେ ଟିକିଏସୁଦ୍ଧା ବଳ ଥିବାଯାଏ ମୋତେ ଏହିପରି ଟାଣିଓଟାରି ହୋଇ ଯିବାକୁ ପଡ଼ିବ, ଏହାଛଡ଼ା

ଅନ୍ୟ ଗତି ନାହିଁ । ଥରେ ବସିଗଲେ ଆଉ ଉଠି ପାରିବ ବୋଲି ଆଶା ହେଉନାହିଁ । ରାତି ନ ପାହୁଣୁ ଯେ ରୁଷୀୟ ଶିବିରରେ ପହଞ୍ଚିପାରିବ ତାହା ଅସମ୍ଭବ । ରାତି ପାହିଗଲେ ଜଙ୍ଗଲ ଭିତରେ ଚାଲି ଶିବିରରେ ପହଞ୍ଚିପାରିବ ।"

ସେ ଚାଲିଲା; ମାତ୍ର ବେଶୀ ଦୂର ନ ଯାଉଣୁ ଦୂରରେ ଦୁଇଜଣ ତାତାର ଘୋଡ଼ାରେ ବସି ଆସୁଥିବାର ଶବ୍ଦ ଶୁଣିପାରିଲା । ସେ ପଳାଇଯାଇ ଗୋଟାଏ ବଡ଼ ଗଛ ପଛରେ ଲୁଚିଗଲା । ଘୋଡ଼-ସବାର ଦୁହେଁ ତା ପାଖ ଦେଇ ରାସ୍ତାରେ ଚାଲିଗଲେ ।

ଚନ୍ଦ୍ର ମଳିନ ହୋଇଆସିଲା । ଟୋପା ଟୋପା ହୋଇ କାକର ପଡ଼ିଲା । ସକାଳ ହୋଇ ଆସିଲାଣି । ଏତେବେଳଯାଏ ଝିଲିନ ବଣଟା ପାର ହୋଇନାହିଁ । ସେ ଭାବିଲା, "ଆଉ କୋଡ଼ିଏ ଡିରିଶ ପାହୁଣ୍ଡ ଯାଇ ବାଟ ଛାଡ଼ି କେଉଁଠି ବଣ ଭିତରକୁ ପଶିଯିବା ଓ ସେଠାରେ ବସି ବିଶ୍ରାମ ନେବା ।"

ଏହାପରି ଭାବି ସେ ଆହୁରି ତିରିଶ ପାହୁଣ୍ଡ ଯାଏଁ ଚାଲିଲା । ଦେଖିଲା, ସେଇଠାରେ ବଣ ସରିଯାଇଛି । ତା ଆଗରେ ବିସ୍ତୃତ ସମତଳ ପ୍ରାନ୍ତର । ଦୂରରେ ରୁଷୀୟ ଶିବିର ଦେଖାଯାଉଛି । ତାର ବାଆଁ ପାଖରେ ଗୋଟାଏ ଗଡ଼ାଣିଆ ଜାଗାର ଶେଷରେ ନିଆଁ ଜଳୁଥିଲା; ନିଆଁ ଲିଭିଗଲାଣି, ଖାଲି ଧୂଆଁ ଉଠୁଛି । ନିଆଁ ଚାରି-ପାଖେ କେତେ ଜଣ ଲୋକ ବସିଛନ୍ତି । ଝିଲିନ ଭଲକରି ଚାହିଁଲା । ଦେଖିଲା, ସେମାନଙ୍କ ପାଖରେ ବନ୍ଧୁକ ଅଛି । ତେବେ ଏମାନେ ନିଶ୍ଚୟ ରୁଷୀୟ ସୈନ୍ୟ ।

ଝିଲିନ ସେମାନଙ୍କୁ ଦେଖି ଆନନ୍ଦରେ ଅଧୀର ହୋଇ ଉଠିଲା । ସେ ତାର ସମସ୍ତ ଶକ୍ତି ଲଗାଇ ପାହାଡ଼ ତଳକୁ ଗଡ଼ି ଚାଲିଲା । ସେ ମନେ ମନେ ପ୍ରାର୍ଥନା କରୁଥାଏ, "ଏ ଖୋଲା

ସମତଳ ଜାଗାରେ ଯେପରି କୌଣସି ତାତାରର ଆଖି ମୋ ଉପରେ ନ ପଡ଼େ । ସୈନିକମାନେ ଖୁବ୍ ନିକଟରେ, ତଥାପି ଠିକ୍ ସମୟରେ ସେମାନଙ୍କ ପାଖରେ ପହଞ୍ଚିପାରିଲେ ରକ୍ଷା ମିଳିବ କିନା । ହେ ଭଗବାନ୍, ମୋତେ ଏତିକି ଦୟାକର, ମୁଁ ଯେପରି ନିରାପଦରେ ସେମାନଙ୍କ ପାଖରେ ପହଞ୍ଚିପାରେ ।”

ସେ ମନେ ମନେ ଭଗବାନଙ୍କ ଏହିପରି ଗୁହାରି ଜଣାଉଛି, ଠିକ୍ ସେତିକିବେଳେ ବାମପାଖରେ ଗୋଟା ଏ ପାହାଡ଼ ଉପରେ ତିନିଜଣ ତାତାର ଦେଖାଗଲେ । ଝିଲିନ ସେମାନଙ୍କଠାରୁ ମାତ୍ର ଦୁଇଶହ ଗଜ ଦୂରରେ ।

ତାତାରମାନେ ଝିଲିନକୁ ଦେଖିପାରି ତା ଆଡ଼କୁ ମାଡ଼ିଆସିଲେ । ତାର ନିଶ୍ୱାସ ବନ୍ଦ ହୋଇଆସିଲା । ସେ ହାତ ହଲାଇ ଚଡ଼ପାଟିରେ ଡାକିଲା, “ଭାଇମାନେ, ମୋତେ ରକ୍ଷାକର । ଭାଇମାନେ, ମୋତେ ରକ୍ଷାକର ।”

ତାର ଡାକ ଶୁଣିପାରି କେତେଜଣ ସୈନିକ ଘୋଡ଼ାରେ ବସି ତାତାରମାନଙ୍କୁ ଅଟକାଇବାକୁ ଦୌଡ଼ିଲେ । ତାତାରମାନେ ଝିଲିନର ନିକଟରେ, ସୈନ୍ୟମାନେ ଦୂରରେ । ଝିଲିନ ସୈନ୍ୟମାନଙ୍କ ଆଡ଼କୁ ପ୍ରାଣପଣେ ଦୌଡ଼ିଲା । ହାତରେ ଗୋଡ଼କଡ଼ାର ଚାଲିଟା ଧରିଥାଏ ଓ ଡାକୁଥାଏ, “ଭାଇମାନେ, ମୋତେ ରକ୍ଷାକର । ତାତାରଙ୍କ ହାତରୁ ରକ୍ଷାକର ।”

ପ୍ରାୟ ପନ୍ଦର ଜଣ ରୁଷୀୟ ସୈନ୍ୟ ସେମାନଙ୍କ ଆଡ଼କୁ ଧାଇଁଥିବାର ଦେଖି ତାତାର ତିନି ଜଣଙ୍କର ଭୟ ଜାତ ହେଲା । ସେମାନେ ଝିଲିନ ପାଖରେ ପହଞ୍ଚିବା ପୂର୍ବରୁ ଅଟକିଗଲେ । ରୁଷୀୟ ସୈନ୍ୟମାନେ ଏହି ଅବସରରେ ଝିଲିନ ପାଖରେ ପହଞ୍ଚିଯାଇ ପଚାରିଲେ, “ତୁମେ କିଏ ? କଅଣ କର ? କେଉଁଠୁ ଆସୁଛ ?”

ଉତ୍ତର ଦେବା ପାଇଁ ଝିଲିନର ଶକ୍ତି ନ ଥିଲା । ସେ କେବଳ "ଭାଇମାନେ ଭାଇମାନେ" କହି ଅଚେତ ପ୍ରାୟ ପଡ଼ିଗଲା ।

ସୈନ୍ୟମାନେ ଝିଲିନର ଅବସ୍ଥା ଦେଖି କିଛି ରୁଟି ଆଣି ତାକୁ ଖାଇବାକୁ ଦେଲେ । ଖାଇସାରିବା ପରେ ତାକୁ ସାମାନ୍ୟ ମଦ୍ୟ ଦିଆଗଲା । ଜଣେ ସୈନିକ ନିଜର ପୋଷାକଟି ଆଣି ତାହାକୁ ଘୋଡ଼ାଇଦେଲା । ଆଉ ଜଣେ ତା ଗୋଡ଼କଡ଼ିର ତାଲା ଭାଙ୍ଗି ଫିଟାଇ ଦେଲା ।

ସୈନ୍ୟ ବାହିନୀର କେତେକ କର୍ମଚାରୀ ତାକୁ ଚିହ୍ନି ପାରିଲେ । ସେମାନେ ତାକୁ ଘୋଡ଼ାରେ ବସାଇ ଶିବିରକୁ ନେଇଗଲେ । ଝିଲିନ ଖାଇ ପିଇ ସୁସ୍ଥ ହେବା ପରେ ଛୁଟି ନେଇ ଯିବା ଦିନଠାରୁ ସେ ପର୍ଯ୍ୟନ୍ତ ଯାହା ଯାହା ଘଟିଥିଲା ସବୁ ବର୍ଣ୍ଣନା କରିଗଲା । ଶେଷରେ ସେ କହିଲା, "ମୁଁ ବାହା ହେବି ବୋଲି ଛୁଟି ନେଇ ଘରକୁ ଯାଉଥିଲି । ମୋତେ ଏଇଆ ଭୋଗିବାକୁ ପଡ଼ିଲା । ବୋଧହୁଏ, ମୁଁ ବାହା ହେବା ଈଶ୍ୱରଙ୍କର ଇଚ୍ଛା ନୁହେଁ ।"

ଝିଲିନ୍ ଫେରିଯାଇ କକେସସ ଅଞ୍ଚଳରେ ନିଜ କାର୍ଯ୍ୟରେ ପୁଣି ଯୋଗ ଦେଲା । ମାସକ ପରେ ଘରୁ ଟଙ୍କା ଆସିବାରୁ କଷ୍ଟିଲିନ ବନ୍ଧନରୁ ମୁକ୍ତି ପାଇଲା । ତାର ବନ୍ଧୁମାନେ ଟଙ୍କା ନେଇ ତାକୁ ମୁକୁଳାଇ ଆଣିଲେ ସତ, କିନ୍ତୁ ସେତେବେଳକୁ ତାର ବଞ୍ଚିବାର ଆଶା ପ୍ରାୟ ନଥିଲା ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

| | | |
|---|---|---|
| ୧ ॥ | ଅଲିଭର ଟ୍ୱିଷ୍ଟ ଓ ଡେଭିଡ କପରଫିଲ୍ଡ | ଟ ୧.୫୦ |
| ୨ ॥ | ଗଲିଭରର ଭ୍ରମଣକାହାଣୀ | ୧.୨୫ |
| ୩ ॥ | ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ | ୧.୫୦ |
| ୪ ॥ | ସମୁଦ୍ରର ନାବିକ | ୧.୫୦ |
| ୫ ॥ | ରାଜା ସଲୋମନଙ୍କ ହୀରାଖଣି | ୨.୫୦ |
| ୬ ॥ | ବିପ୍ଲବୀ | ୨.୫୦ |
| ୭ ॥ | ଛଅ ସିପାହୀ | ୨.୫୦ |
| ୮ ॥ | ପମ୍ପେଇନଗରୀର ଶେଷଦିନ | ୨.୫୦ |
| ୯ ॥ | ରାଜପୁତ୍ର ଓ ଭିକାରୀ | ୨.୦୦ |
| ୧୦ ॥ | ଦୁଇଟି ନଗରୀର କାହାଣୀ | ୨.୦୦ |
| ୧୧ ॥ | ଡନ୍ କୁସ୍ତି | ୨.୦୦ |
| ୧୨ ॥ | ସାଇଲସ୍ ମାର୍ନାର୍ | ୧.୫୦ |
| ୧୩ ॥ | ଲୌହମୁଖାଧାରୀ ମଣିଷ | ୨.୦୦ |
| ୧୪ ॥ | ରବିନ୍ସନ କ୍ରୁଶୋ | ୧.୨୫ |
| ୧୫ ॥ | ଅଶୀଦିନରେ ପୃଥିବୀ ପରିଭ୍ରମଣ | ୨.୫୦ |
| ୧୬ ॥ | ଦୁଃଖିନୀ | ୨.୫୦ |
| ୧୭ ॥ | ଶେକ୍ସପିଅର କାହାଣୀ (୧ମ ଖଣ୍ଡ) | ୨.୦୦ |
| ୧୮ ॥ | ,, ,, (୨ୟ ଖଣ୍ଡ) | ୨.୦୦ |
| ୧୯ ॥ | ,, ,, (୩ୟ ଖଣ୍ଡ) | ୨.୦୦ |
| ୨୦ ॥ | ବିଚିତ୍ର ଚାବିଜ | ୨.୨୫ |
| ୨୧ ॥ | ଗ୍ରୀସ୍ ଦେଶର ଉପକଥା | ୨.୨୫ |
| ୨୨ ॥ | ଅନେକ ଆଶା | ୨.୨୫ |
| ୨୩ ॥ | ସମୁଦ୍ର ଗର୍ଭରେ କୋଡ଼ିଏ ହଜାର ଲିଗ୍ ଭ୍ରମଣ | ୨.୨୫ |
| ୨୪ ॥ | ଟମ୍ ସଏର | ୨.୦୦ |
| ୨୫ ॥ | ଟଲଷ୍ଟୟ କାହାଣୀ (୧ମ ଖଣ୍ଡ) | ୨.୦୦ |
| ୨୬ ॥ | ,, ,, (୨ୟ ଖଣ୍ଡ) | ୨.୦୦ |